# ଅନ୍ତର୍ଗତ ସୁଖ-ଦୁଃଖ

କବିତା

ଲେଖକ : ଭାନୁଜୀ ରାଓ ■ ପ୍ରକାଶକ : କାହାଣୀ, କଲ୍ୟାଣୀନଗର, କଟକ-୧୩ ■ ଅକ୍ଷରସଜ୍ଜା : ଅକ୍ଷର, କଲ୍ୟାଣୀନଗର, କଟକ-୧୩ ■ ମୁଦ୍ରଣ : ଟେକ୍‌ନୋ ଆର୍ଟସ ଅଫ୍‌ସେଟ୍, କଲ୍ୟାଣୀନଗର, କଟକ-୧୩ ■ ମୂଲ୍ୟ : ଟ. ୪୦/-

ପ୍ରଥମ ପ୍ରକାଶ :
୧୯୯୯

# ANTARGATA SUKHA-DUKHA

A Collection of Poems

Author : Bhanujee Rao ■ Publisher : Kahani, Kalyani Nagar, Cuttack-13 ■ Typesetting : Akshara, Kalyani Nagar, Cuttack-13 ■ Printed at : Techno Arts Offset, Kalyani Nagar, Cuttack-13 ■ Price : Rs.40/-.

First Edition :
1999

## ଉତ୍ସର୍ଗ

ସେହି ସବୁ ଏକାନ୍ତ ବ୍ୟକ୍ତିଗତ ସ୍ୱପ୍ନ ମାନଙ୍କୁ, ଯେଉଁମାନେ ବିଭିନ୍ନ ରାତ୍ରର ଅନାସ୍ୱାଦ ଛୁଇଁ ମୋ ହାତ ମୁଠାରେ ଆସି ଧରା ଦେଇଥିଲେ ।

*କବିଙ୍କର ଅନ୍ୟାନ୍ୟ କୃତି :*

ବିଷାଦ ଏକ ଋତୁ
ନଈ ଆରପାରି
ଚନ୍ଦନବନରେ ଏକା
ଦର୍ପଣ ଆଗରେ
ଏକା ଏବଂ ଏକାଏକା
ହଳଦୀପତ୍ରର ବାସ୍ନା
ଜହ୍ନର ରକ୍ତ ଧଳା

# ସୂଚୀ

# ସ୍ମିତା ପାଟିଲ

ରାସ୍ତା କାନ୍ଥରେ ସିଢ଼ି ଲଗାଇ
ସିନେମା ପୋଷ୍ଟର ମାରୁଛି ଜଣେ ଲୋକ,
ତାର ଗୋଟିଏ ହାତରେ ଅଠା-ହାଣ୍ଡି
ଆଉ ଅନ୍ୟ ହାତରେ ପୋଷ୍ଟରର ବଣ୍ଡିଲ ।
ସେ ଅପୂର୍ବ ଦକ୍ଷତାରେ ଭାରସାମ୍ୟ ନ ହରାଇ
ସିଢ଼ିରେ ଚଢୁଛି - ଓହ୍ଲାଉଛି ।
ସ୍ମିତା ପାଟିଲ ମୋ ଆଡ଼କୁ
ଅନାଇ ରହିଛି ଅପଲକ,
ତା ଆଖିରୁ ଦୁଇ ଟୋପା ଲୁହ
ଗଡ଼ି ଆସୁଛି ମସୃଣ ଗାଲ ଦେଇ ।
ମୋ ଇଚ୍ଛା ହେଲା ସିଢ଼ି ଛଡ଼ାଇ ନେଇ
ମୁଁ ଉଠିଯିବି କାନ୍ଥ ଉପରକୁ,
ସଯତ୍ନରେ ପୋଛି ଦେବି
ସେହି ଲୁହ ମୋ ରୁମାଲରେ ଏବଂ କହିବି,
'ସ୍ମିତା, ଆଉ କାନ୍ଦ ନାହିଁ । ମୁଁ, ତୁମର
ସବୁ ଦୁଃଖ ଦୂର କରି ଦେବି ।
ମୁଁ କିନ୍ତୁ ସେତେବେଳେ ସମ୍ପୂର୍ଣ୍ଣ ବେକାର,
ଓଳିଏ ଖାଇଲେ, ଦୁଇ ଓଳି ଓପାସରେ ରହେ
ଆଞ୍ଜୁଳାଏ ପାଣି ପାଇଁ ହାତ ପାତେ
ରାସ୍ତାର ଢିଙ୍କିଆ କଳ ପାଖେ ବିନୟରେ ଅବନତ ହୋଇ ।

କାଲି ମୁଁ ଶୋଇଥିଲି ଗୋଟାଏ ଘୂର୍ଣ୍ଣିଝଡ କୋଳରେ,
ଦୁଃସ୍ୱପ୍ନମାନେ ମୋତେ ଘେରି ରହିଥିଲେ
ଗୋଲ ହୋଇ ।
ରାତିର ଜରାୟୁରେ ସକାଳର ଭ୍ରୂଣ କ୍ରମଶଃ ବଢୁଛି,
କାଲି ସେ କେଉଁ ରୂପ ନେବ ଜନ୍ମ ନେଇ କେଜାଣି ?
ସୂର୍ଯ୍ୟାସ୍ତ ପାରି ହୋଇ ମୁଁ ଏଥର ଯିବି
ଅନିର୍ଦ୍ଦିଷ୍ଟ ଗନ୍ତବ୍ୟ ଆଡକୁ ।
ଗୋଲାକୃତି ମୋର ସମସ୍ତ ସୌଭାଗ୍ୟ ଗଡ଼ି ଗଡ଼ି
ଦିଗ୍‌ବଳୟ ତଳକୁ ଖସି ପଡୁଛି କ୍ରମାଗତ,
ଶୂନ୍ୟ ଚିରା ପକେଟରେ କପର୍ଦ୍ଦକ ଟିଏ ନାହିଁ ।

ରାସ୍ତା କାନ୍ଥରୁ ସ୍ମିତା ଅନାଇଛି ମୋତେ
ନିର୍ନିମେଷ ନୟନରେ,
ତା ଲୁହରେ ମୋ ରୁମାଲ
ଓଦା ହୋଇ ଯାଇଛି ପୂରାପୂରି ।
ମୁଁ କିନ୍ତୁ ସିଡ଼ିରେ ଚଢି
ସ୍ମିତାକୁ ଏଥର ତୁନି ତୁନି କହିବି,
'ଆଉ କାନ୍ଦ ନାହିଁ ସ୍ମିତା,
ମୁଁ ଏଥର ସବୁ ଦୁଃଖ
ମୋ ହୃଦୟରେ ବହନ କରିବି ।'

■■■

# ସ୍ୱାଧୀନତାର ପଚାଶ ବର୍ଷ ପରେ

ବେଳେ ବେଳେ ସମୟ ସ୍ଥିର ହୋଇ ଯାଏ,
ପୃଥିବୀ ଆଉ ବୁଲେ ନାହିଁ
ଆହ୍ନିକ ଗତିରେ ।
ସବୁ କିଛି ସ୍ତବ୍ଧ ହୋଇଯାଏ
ପବନ ତାର ପଣିକିଆ ଭୁଲିଯାଏ
କିଛି ବେଳ ପାଇଁ ।
ନଈ ସବୁ ବହୁଥାନ୍ତି ସିନା,
କିନ୍ତୁ କଳକଳ ବିବୃତି ତାଙ୍କ
ଶୁଭେ ନାହିଁ କାହାରି କାନକୁ ।
ପୃଥିବୀ ପାଲଟି ଯାଏ
ବିରାଟ ଏକ ଅନାଥାଶ୍ରମରେ,
ଅସହାୟତା ବିଛାଡ଼ି ହୋଇ
ପଡ଼େ ଚାରିଆଡ଼େ ।
କାହାକୁ ବାଟ ପଚାରିବି,
କେଉଁଟା ଠିକ ଆଉ
କେଉଁଟା ଭୁଲ ବୋଲି ?
ରାସ୍ତା ସବୁ ଦିଗଚିହ୍ନହୀନ,
ପଶିଛନ୍ତି ଅମୁଁହା ଗଳିରେ ।
ପରାମର୍ଶ ଦେବାକୁ କେହି ନାହିଁ ।
ବିଶ୍ୱାସର ସବୁ ପାଚିରୀ
ଭୁଶୁଡ଼ି ପଡ଼ିଛି ଗୋଟି ଗୋଟି
କରି,
ଅନାବନା ଘାସ ଆଉ ଶିଆଳୀ

ଲଟାରେ ଭରି ଯାଇଛି
ସବୁ ଅପନ୍ତରା ।
ଫୁଲ ଆଉ ଫୁଟୁ ନାହିଁ
ଗଛମାନଙ୍କରେ
ଚିରନ୍ତନ ଶୀତ ଋତୁ
ଗ୍ରାସିଅଛି ସମସ୍ତ ବନସ୍ତ ।
ଗଛର ଅବୟବ ପତ୍ରଶୂନ୍ୟ
ହେଉଛି କ୍ରମଶଃ ।
ମୁଁ ଗୋଟାଏ ଭଙ୍ଗା ଘରେ
ଚୁପ୍ ଚାପ ବସି
ପ୍ରହର ଗଣୁଛି, କିଂକର୍ତ୍ତବ୍ୟବିମୂଢ଼ ।
ଘର ଓଳା ହୋଇ ନାହିଁ
ବହୁତ ଦିନରୁ,
ସ୍ୱେଚ୍ଛାଚାରୀ ମୂଷାମାନେ
ଦୌଡୁଛନ୍ତି ଏଣେତେଣେ
କେଉଁ ଆବେଗରେ ?
ବେଳେ ବେଳେ ଚେମିଣି ଓ
ବାଦୁଡ଼ିଙ୍କ ତିର୍ଯ୍ୟକ ଉଡ଼ାଣ
ମୋତେ ଚକିତ କରୁଛି ।
ବୁଢିଆଣୀ ଜାଲର ବେଷ୍ଟନୀରେ
ଗାନ୍ଧିଜୀ କ୍ୟାଲେଣ୍ଡର ହୋଇ
ଝୁଲୁଛନ୍ତି ।
ଅସହାୟ ପାକୁଆ ପାଟିରେ ସେ କିଛି
କହିବାକୁ ଚେଷ୍ଟା କରୁଛନ୍ତି କ୍ରମାଗତ ।
ଆଉ ତାଙ୍କ ବାଡି ଶିଥିଳ ମୁଠାରୁ
ଖସି ପଡିବାକୁ ଉଦ୍ୟତ ହେଉଛି ।

■■■





# ହେମନ୍ତର ଝଡ଼

ସବୁକିଛି ଉଡ଼ିଗଲା
ହେମନ୍ତ ଝଡ଼ରେ,
କାଳି-ବୋଳା ଆକାଶରୁ
ଝାମ୍ପ ଦିଏ ଝଡ଼ର ଈଗଲ,
ଛିନ୍ନଭିନ୍ନ କରିବାକୁ
ତା ତୀକ୍ଷ୍ଣ ନଖରେ
ସୁନ୍ଦର ସବୁ କିଛି
ଯାହା ମୋର ହୃଦୟର
ଅତି ଆପଣାର ।

ଉଡ଼ିଗଲା ସ୍ମୃତି ସବୁ
ହେମନ୍ତ ଝଡ଼ରେ,
ହୃଦୟର ମଲାଟରୁ ସ୍ମୃତିର
ପରିଚିତ ଛବି
ପୋଛି ଦେବା ସହଜ ତ ନୁହେଁ,
ହେମନ୍ତର ଝଡ଼ କିନ୍ତୁ
କିଛି ମାନିଲାନି,
କରି ଦେଲା ସବୁ କିଛି
ଓଲଟ ପାଲଟ,
ମୁହୂର୍ତ୍ତ ଭିତରେ ।

ଯେତେବେଳେ ମୁଁ ରହିବିନି
ମାଟିର ପୃଥିବୀରେ ଆଉ,
ଏ ଗୋଧୂଳି ସରି ଯାଉ ଯାଉ
କେହି କା'ଣ ମୋତେ ଭାବି
ଉଦାସ ହେବନି ?
ସେଦିନ ମୁଁ ମୁହାଁମୁହିଁ
ଦର୍ପଣ ଆଗରେ
ମୋର ସେ ଗୋପନ ପାପ
ଢାଣିଛି କି ଦର୍ପଣର ଛାଇ ?
ସନ୍ତୁଳୁଛି ହୃଦୟକୁ
ଦିବସ- ରଜନୀ,
ମୁଁ କେମିତି ଖସିଯିବି
ବିବେକର ଉଦ୍ୟତ ତର୍ଜନୀ
ସବୁ ବେଳେ ମୋ ଆଡ଼କୁ
ଖାଲି ମୁହାଁଇଛି ?
କିଏ କଣ ଜାଣିଥିଲା
ମୁଁ ଆସିବି ଫେରି
ପୁଣି ଏହି ବଗିଚାକୁ
ଦେଖିବାକୁ ଫୁଲ ସବୁ
କେମିତି ଫୁଟନ୍ତି ନିଃଶବ୍ଦରେ
ଗୋଟି ଗୋଟି କରି ?

କିଏ କଣ ଦେଖିଛି କି ଯନ୍ତ୍ରଣାର ରୂପ ?
କେହି ଦେଖି ନାହିଁ,
କିଏ କହେ ଯନ୍ତ୍ରଣା ନାହିଁ
ପ୍ରାର୍ଥିତ ନାରୀକୁ ଛାଡ଼ି
ଆସିବାରେ ?
କିଏ କହେ ଯନ୍ତ୍ରଣା ନାହିଁ
ନିଜକୁ କ୍ଷୟ କରିବାରେ

ତିଳ ତିଳ କରି ?
କେ କହେ ଯନ୍ତ୍ରଣା ନାହିଁ
ଯେତେବେଳେ ବାମକୁ
ଝିଅ ଚିହ୍ନେ ନାହିଁ ?
କିମ୍ବା, ବଖ୍ରାସର ସବୁ ଖୁଣ୍ଟ
ଦୋହଲି ଯିବା ପରେ
ଯେତେବେଳେ ଈଶ୍ୱର ଖସି ପଡେ
ଗଳି ପାଖ ମଇଳା ଖାତରେ
ମରିଯିବା ପାଇଁ ?
ଯନ୍ତ୍ରଣାର ଅଜସ୍ର ରୂପ
ଚିହ୍ନିଲେ ଚିହ୍ନି ହୋଇ ଯାଏ,
ଅତର୍କିତେ ହେମନ୍ତ ଝଡ଼ରେ ।

■■■

# ଅନ୍ଧଗଳି

ଆପଣଙ୍କ ସାହସ ଅଛି
ଅନ୍ଧ ଗଳିରେ ପଶିବାକୁ ?
ଆସନ୍ତୁ ମୋ ସାଙ୍ଗରେ
ମୁଁ କିନ୍ତୁ ପଶିଯିବି ଅନାୟାସରେ
କ୍ଳେଦ ଓ ଅନ୍ଧାରର ଅଭ୍ୟର୍ଥନାକୁ
ଅପେକ୍ଷା ନ କରି ।
ମୁଁ ଏକ ଧୂସର ମଣିଷ,
ମନରେ ନା ଦେହରେ ଠିକ
କହି ପାରୁ ନାହିଁ ।
ବିସ୍ତୀର୍ଣ୍ଣ ସକାଳରେ ଯେତେବେଳେ
ଚାରିଆଡ଼େ ସୁନେଲୀ କିରଣ,
ମୁଁ କଣ ସେତେବେଳେ ଦିଶୁଥାଏ
ବାରବୁଲା ନଗଣ୍ୟ ପଥିକ ପରି
ଅତ୍ୟନ୍ତ ବିବର୍ଣ୍ଣ,
ଆଣୁଥାଏ ଧୂଳିରେ ଧୂସର ?

ଆପଣ ଗଲେ କୁଆଡ଼େ,
କାହିଁଗଲା ଆପଣଙ୍କ ଛାଇ
କେଉଁଠି ହେଲେ ଦିଶୁ ନାହିଁ
ଅସ୍ତିତ୍ୱର ଚିହ୍ନ- ବର୍ଣ୍ଣ କିଛି ?
ମୋ ପରି ସର୍ବସ୍ୱାନ୍ତ ହୁଅନ୍ତୁ ଏଥର,
ମୋର କିଛି ଆଉ ରହିଲାନି ବାକି,
ମୁଁ ଆଜି ଏକାନ୍ତ ଏକାକୀ,
ବୁଲୁ ଅଛି ଏକା ଏକା,
ସମୟକୁ ମାପି ମାପି
କିନ୍ତୁ ତଥାପି,
ଏ ଗଳି ସରୁ ନାହିଁ ମୋଟେ ।
ଏ ଅନ୍ଧଗଳି କିଛି
ମଶାଣିର ମୁଖବନ୍ଧ ନୁହେଁ,
ଏଠି କେହି କେବେ ହେଲେ
ପୋଡ଼ା ହେବେ ନାହିଁ ।
ଏଠି ଜଳିବନି ଜୁଇ
ବିଦାୟୀ ସନ୍ଧ୍ୟାରେ
ଛୁକୁ ଛୁକୁ ହୋଇ କାହାରି ବି,
ଡରନ୍ତୁନି ଆପଣ, ଆଉଟିକେ
ଆଗାନ୍ତୁ ଏଥର, ଅଳ୍ପ ଡାହାଣକୁ ।
ମୋତେ ବ୍ୟବଚ୍ଛେଦ କରନ୍ତୁନି
ଆପଣ,
ଚିରିଚିରି ଫାଳ ଫାଳ କରି,
କଣ ମିଳିବ ଆପଣଙ୍କୁ
ଦେହକୁ ଓଟାରି ?
ହୃଦୟ କଣ ଧରା ଦେବ
ହାତର ମୁଠାରେ ?
ହୃଦୟ ଲୁଚିଯିବ ହୃଦୟ ଭିତରେ ।

ଅନ୍ତରାଳ ଟିକେ ପାଇଁ
ମୁଁ ପଶିଛି ଏ ଅନ୍ଧଗଳିରେ ।
ଏ ଗଳିରେ ପଶେ ନାହିଁ
କେହି ଡାକବାଲା,
ଏ ଗଳିରେ ଚିଠି ଆସେ ନାହିଁ,
ଠିକଣା ସବୁ ପୋଛି ହୋଇଯାଏ
ନିବିଡ଼ ଅନ୍ଧାର ଭିତରେ ।
ନାମର ଫଳକ କିଛି
ଲଟକୁନି କାହାରି ଦୁଆରେ,
ଗଳିଟା ବି ନାମ-ଗୋତ୍ରହୀନ,
ଅତି ସରୁ ଖାଲ-ଢ଼ିପମୟ,
ବେବାକ ଭାଣ୍ଡିଆ ହେବେ
ଆଗେଇଲେ ଟିକେ,
ବାଟ ଆଉ ପାଇବେନି
ବାହାରି ଯିବାକୁ ।
ନିତାନ୍ତ ହଠାତ୍ ଏଠି
ରାସ୍ତା ସରିଯାଏ ।
ଏ ଗଳିରେ ମୁଁହ ମାଡ଼ି
ଖାଲି ପଡ଼ିଥାଏ,
କ୍ଳାନ୍ତ ନୀରବତା କିଛି ଏଠି ସେଠି
ଯୁଗ ଯୁଗ ଧରି ।

■ ■ ■

# ଦ୍ୱୀପ

ସେଦିନ ଜୋଛନା ଥିଲା
ଆକାଶରେ,
ସାଗରରେ ପ୍ରବଳ ଜୁଆର,
ଆମେ ଦୁହେଁ କିମ୍ବଦନ୍ତୀ ହେବା ପାଇଁ
ଚେଷ୍ଟା କରୁଥିଲୁ,
ପ୍ରଦକ୍ଷିଣ କରୁଥିଲୁ ପରସ୍ପରକୁ
ଖୁବ୍ ପାଖାପାଖି,
ଗୋଟିଏ ବୃତ୍ତରେ ।
କିନ୍ତୁ କଣ ଗୋଟେ ଥିଲା ପବନରେ,
ଅବିଶ୍ୱାସର ଭ୍ରୂଣ ପରି
ସୂକ୍ଷ୍ମ କିଛି ସନ୍ଦେହର କୀଟ,
ଯାହା ଆମ ମିଳନକୁ
ବାଧା ଦେଲା ଚୂଡ଼ାନ୍ତ ଭାବରେ ।
ଅକ୍ଷାଂଶ ଯଦିଓ ଏକ,
ଦ୍ରାଘିମା ବି କିଛି ଭିନ୍ନ ନୁହେଁ,
ତଥାପି କଣ ଗୋଟେ ଥିଲା ପବନରେ
ଯାହା ଆଖିରେ ଧରା ପଡ଼େ ନାହିଁ ।

କିଏ କହେ ପ୍ରେମକୁ
ନିଲାମରେ କିଣି ହୁଏ ବୋଲି ?
କିଏ କହେ ପ୍ରେମର
ଦାମ ଭାରି ଚଢ଼ା ?
ଏ ସବୁ ମିଛ କଥା
ତୁଚ୍ଛା ମନଗଢ଼ା ।

ସମୁଦ୍ରରେ ଅମାପ ଜୁଆର,
ମୁଁ ପାଲଟିଛି ଗୋଟିଏ ଦ୍ୱୀପରେ,
ଚାରିଆଡ଼େ ଫେନିଳ ଲବଣାକ୍ତ ଜଳ,
ଯାହା ମୋତେ ରଖିଛି
ଅଲଗା କରି ତୁମ ନିକଟରୁ,
କିଞ୍ଚିତ୍ ଦୂରରେ ।

ତୁମେ ବି ପାଲଟିଛ ଆଉ ଏକ
ନିର୍ଜନ ଦ୍ୱୀପରେ,
ଯେଉଁଠି ଦିନରାତି ପବନ
ହାହାକାର କରେ ।
ଜୁଆର ମାଡ଼ି ଆସି
ପୁଣି ଛାଡ଼ି ଯାଏ ।
କିନ୍ତୁ ଆମେ ଦୁହେଁ ରହିଯାଉ
ଅଲଗା ଅଲଗା, ଦୂରରେ ଦୂରରେ,
ମଝିରେ ସନ୍ଦେହର ଲବଣାକ୍ତ ଜଳ
ସଗର୍ଜନେ ଖେଳୁଥାଏ ଖାଲି ।

■■■

# ସ୍ମୃତିଙ୍କ ବିକ୍ଷୋଭ

ସାରାରାତି ମୁଁ କାନ୍ଦିଛି,
ତକିଆ ତିନ୍ତିଛି,
ସ୍ମୃତି ସବୁ ବାହାରିଲେ ବିକ୍ଷୋଭରେ
ପଟୁଆର କରି,
ହୃଦୟ ବିଦାରି ।
ସେମାନଙ୍କ ନାହିଁ କିଛି ଦୋଷ,
ଅସଂଖ୍ୟ ଅସନ୍ତୋଷ କୁହୁଳୁଛି
ମନରେ ତାଙ୍କର ।
ନିୟତି ବଡ଼ ନିଷ୍ଠୁର,
ହୁଏ ନାହିଁ ସବୁ କିଛି
ଗାଣିତିକ ରୀତି ମାନ୍ୟ କରି ।
ଦୁଇରେ ମିଶାଇଲେ ଦୁଇ
ସବୁବେଳେ ଚାରି ହୁଏ ନାହିଁ
ସେମାନେ ଶୁଣିଛନ୍ତି ଶବ୍ଦ ନୂପୁରର
ଗୋଡ଼ରେ ଅଳତା ରେଖାର
ନିବିଡ ବେଷ୍ଟନୀ
ଦେଖିଛନ୍ତି ସେମାନେ,
କାହିଁକି ମାନି ନେବେ ଆଜି
ସହସା ସବୁ ଶବ୍ଦ ବନ୍ଦ ହେଲା ବୋଲି,
ବର୍ଷା ଧାରା ଶୁଖିଗଲା ଘୋର ନିଦାଘରେ ?

ଜୀବନରେ ଆସି ନାହିଁ
ଚଉଠିର ରାତି କେବେ ହେଲେ
ସାକ୍ଷୀ ଅଛି ଏକାକୀ ଚଟେଇ,
କଣ ହେବ ନିଦ୍ରାହୀନ ରାତି
କାଟିବାରେ
କାନ୍ଦିକାନ୍ଦି ତକିଆ ତିନ୍ତାଇ ?
ପଦବ୍ରଜେ ପାରି ହେବି
ଦେହ ଉପତ୍ୟକା, ମସୃଣ ଜାନୁଦେଶ
ନାହିଁ ମାଳଭୂମି, ଛାତିର ପାହାଡ ପାଖେ
ଅଳ୍ପ ଥକା ମାରି, ଖୋଜିବି ଆଶ୍ରୟ ପୁଣି
ସ୍ୱପ୍ନମୟ ଆଲିଙ୍ଗନରେ ।

ଅଳକ୍ତକ ରେଖା କିନ୍ତୁ
ମ୍ଳାନ ପଡ଼ି ନାହିଁ,
ଝାଡ଼ଲଣ୍ଠନର ଶିଖା
ହୁ-ହୁ ହୋଇ ସେମିତି ଜଳୁଛି,
ସ୍ମୃତିଙ୍କ ବା ଦୋଷ କଣ
ସେମାନେ ବି ବସିଛନ୍ତି ଗୋଲ ହୋଇ
ପାରସିକ ଗାଲିଚା ଉପରେ ।



# ଜେମା ଦେଇ

ଉଡ଼ିଗଲେ ସବୁ ଗେଣ୍ଡାଳିଆ
ସୁଦୂର ମୁହାଁଣ ଆଡ଼କୁ
ଗୋଟି ଗୋଟି ହୋଇ,
ଆକାଶକୁ ମାପି ମାପି
ସେମାନଙ୍କ ଉଡ଼ନ୍ତା ଡେଣାରେ ।
ଜେମା ଦେଇ ଆଜିବି କାନ୍ଦନ୍ତି,
ତାଙ୍କର ମନର କଥା
ବାହୁନି ବାହୁନି ମହୁରୀ
କାନ୍ଦୁଥାଏ ଖାଲି ।
ହାତକୁ ସୁନାଘଡି, ହୀରୋହୋଣ୍ଡା
ମଟର ସାଇକେଲ, ଏ କିଛି ଯୌତୁକ
ନୁହେଁ, ବିବାହର ନିର୍ଦ୍ଦିଷ୍ଟ ବିଧି,
ନୋହିଲେ ବେଦୀକୁ ବର ଯିବ ନାହିଁ,
ନିଶରେ ହାତ ମାରି ମୁରୁକେଇ
ହସନ୍ତି ସମୁଧି ।
ରଙ୍ଗୀନ ଟି:ଭି କଥା ପୁଣି
ଥରେ କହିବାକୁ ହେବ ?
ଏ ସବୁ ଛାଏଁ ଛାଏଁ
ଆସି ଯାଏ ନିର୍ବିଘ୍ନରେ
ଠିକ ଯଥାବିଧି ।

ଢେମା ଦେଇ ସାନ ନଈ ପରି
ଯାଉଛନ୍ତି ଭେଟିବାକୁ
ସଂସାର-ବାରିଧି,
ସୁଖ ନାହିଁ ଜୀବନରେ
ବହୁ ଅଛି ଲୁହଧାର
ଆଖିରୁ କେବଳ,
ଜୀବନରେ ଅନେକ ଭଉଁରି
ଟାଣି ନିଏ ଚୋରା-ସ୍ରୋତ
ଗଭୀର ପାଣିକୁ ବୁଡ଼ାଇବ ବୋଲି ,
ଜୀବନରେ ଶତେକ ଗଞ୍ଜଣା,
ଛଳନା-ଚାତୁରୀ ।

ଗେଣ୍ଡାଳିଆ ଆଜି ବି ଉଡନ୍ତି,
ସେମାନେ ପର ତାଙ୍କ ଆଜି ବି ଝାଡ଼ନ୍ତି,
ଢେମା ନେଇ ଆଜିବି ଝୁଲନ୍ତି
ଗଛ ଡାଳମାନଙ୍କରେ
ବେକରେ ଦଉଡ଼ି ଲଗାଇ
ପବନରେ ତାଙ୍କ ଦେହ
ଭାସୁଥାଏ ଦୋହଲି ଦୋହଲି ।



# ସ୍ୱପ୍ନର ଏପଟ-ସେପଟ

ସ୍ୱପ୍ନର ସେପଟରେ
ଆଦିଗନ୍ତ ଦଗ୍ଧ ଅପନ୍ତରା,
ଅବିକଳ ମରୁଭୂମି ଭଳି ।
ସ୍ୱପ୍ନର ଏପଟରେ
କିଛି ମ୍ଳାନ ପାର୍ଥିବ ବାସନା,
ପଡ଼ି ରହେ ବୃନ୍ତଚ୍ୟୁତ ଫୁଲ ପରି,
କିନ୍ତୁ ଯାହାର ମହକ
ବାରମ୍ବାର ଓଟାରେ ପାଖକୁ
ଆତୁଆଳ ଖୋଜେ ନାହିଁ
ଆଲିଙ୍ଗନ କରିବାକୁ ନିବିଡ଼ ଭାବରେ ।
ସ୍ୱପ୍ନ ପାଖକୁ ଯିବା
ସହଜ ନୁହଁଇ ମୋଟେ
ମଶାଣୀ ଟପିବାକୁ ହେବ ଗୋଟେ,
ଯେଉଁଠି ନିଆଁ ସଙ୍ଗେ
ଖେଳୁଛି ଶରୀର ।
ଯେଉଁଠି ବାସନା-କାମନା ସବୁ
ପୋଡ଼ି ଛାର-ଖାର ।
ମୁଖାଗ୍ନି ଦେଉଛି କେହି,
ଉଲ୍ଲସିତ ହରିବୋଲ ଧ୍ୱନି,
ଚତୁର୍ଦ୍ଦିଗ କମ୍ପୁଛି କେବଳ ।
ଶବବାହକମାନେ ଗୋଲ
ହୋଇ ବସିଛନ୍ତି,
ହାତରେ ମଦର ବୋତଲ ।

ଏଠି ନାହିଁ ମୋହ ବା କାମନା
ସବୁ ଛାଡ଼ି ଆସିଅଛି ଗୋଟାପଣେ,
ଆଜି ମୁଁ ନଗଣ୍ୟ ଭିକାରୀ,
ବସ୍ତ୍ରର ନାହିଁ ବିଡ଼ମ୍ବନା ଶରୀରରେ,
ଅଲୋଡ଼ା ନିର୍ମୋକ ଭଳି
ଖସି ପଡ଼ିଅଛି ଯାହା, କିଛି ଆବର୍ଜନା,
ଦାବାନଳ ହୁ-ହୁ ହୋଇ ଜ୍ୱଳେ ।
ମୋ ଦେହକୁ ବୃତ୍ତ କରି
ବୁଲୁଛନ୍ତି କିଛି ପାପ
କିଛି ବା କ୍ଷଣିକ ବାଣିଜ୍ୟ,
ଯାହା ବ୍ୟର୍ଥ ହୋଇଥିଲା
ଅର୍ଜିବାକୁ ନ୍ୟୂନତମ ପୁଣ୍ୟ
ଶେଷଥର ପାଇଁ ।
ଏ ସ୍ମୃତିର ମୁହାଣ ପାଖେ
ଠିଆ ହୁଏ ଜନ୍ମ
କିଛି ବେଳ ଲାଗି,
କେବଳ ବୁଡ଼ି ଯିବ
ବୋଲି ସିନା ଅକାତ ପାଣିରେ ।

■■■

# ପରିତ୍ରାତା

ତୁମେ ମୋତେ ବେଢ଼ିଥିଲ
ଅପାର ପ୍ରେମରେ,
ରକ୍ଷା କରିଥିଲ ମୋର
କୋମଳ କୌମାର୍ଯ୍ୟ,
ଶତ ବିଡମ୍ବନା ଦାଉରୁ
ଉଦ୍ଧାରିଛ ମୋତେ ବାରମ୍ବାର ।
ଛୁଁଇ ନାହିଁ କେହି ନାରୀ
ମୋ ହାତକୁ କେତେବେଳେ ହେଲେ ।
ଯୁବକ ଥିଲି ଯେତେବେଳେ
ମୁଣ୍ଡରେ ବାବୁରୀ ବାଳ,
ଆଖିରେ ସୁନାର ଚଶମା
ଓଠରେ ପାନର ଲାଲି ରଙ୍ଗ,
ସୁବିନ୍ୟସ୍ତ ପଞ୍ଜାବୀରେ କେଉଁଠି
ହେଲେ ପଡ଼ି ନାହିଁ ଭାଙ୍ଗ,
ସମୟର,
ନିଶର ସୂକ୍ଷ୍ମ ରେଖା
ଉଙ୍କି ମାରୁଥାଏ ଓଠର
ପ୍ରତ୍ୟନ୍ତ ସୀମାରେ ।

ତୁମକୁ ଭଲ ପାଇଥିଲି ବୋଲି
ତୁମେ ଦେଲ କବଚ-କୁଣ୍ଡଳ,
ଯାହା ମୋତେ ବର୍ମ ପରି
ଘୋଡାଇ ରଖିଲା,
ସୁତୀବ୍ର କଟାକ୍ଷର ତୀର
ଭେଦି ପାରିଲାନି ମୋର
ଲୁହାର ଶରୀର ।
ମୋତେ ପାଇଲେନି କେହି
କିଶୋରୀ ବା ନାରୀ ।
ମୋ ଦେହରୁ ଉତ୍ସାରିତ
ତୁମରି ଦେହର ଘ୍ରାଣ,
ଫୁଲର ମହକ ପରି ମୃଦୁ
କିନ୍ତୁ ଅତୀବ ମାୟାବୀ,
ତାକୁ ପାଇ ଆଉ କେହି ନାରୀ
ଆସିଲେନି ମୋ ପାଖକୁ
ହୁଅନ୍ତୁ ସେ ସୁନ୍ଦରୀ ବା ଗୋରୀ,
ସମସ୍ତେ ଦୂରକୁ ଘୁଞ୍ଚିଲେ ।

ସମୟର ଦର୍ପଣରେ ମୋ ମୁହଁରେ
ବଳି ରେଖା ଅତ୍ୟନ୍ତ ପ୍ରକଟ,
ଅସଂଖ୍ୟ ସାନ ସାନ ଗାର ପରି
ମୁହଁର ଏଠି ସେଠି
ଫୁଟି ଉଠିଅଛି,
ଆଉ ତୁମେ ସୁଦୂରର ସ୍ମୃତି ହୋଇ
ପାଖର କାନ୍ଥରେ ଝୁଲୁଛ
ଅନାବିଳ କାଠର ଫ୍ରେମ୍‌ରେ ।



# ବର୍ଷା ନାହିଁ

ମେଘମାନେ ଅବିରତ କାନ୍ଦୁଛନ୍ତି
ସକେଇ ସକେଇ ।
ସାତଦିନ ହେଲା ସୂର୍ଯ୍ୟର ମୁହଁ
ଦେଖି ନାହିଁ ।
ଆକାଶରେ କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତର
ସଙ୍କେତ ନାହିଁ, କିମ୍ବା କୌଣସି
ଉଜ୍ଜ୍ୱଳ ପ୍ରସ୍ତାବ ପବନରେ ।
ଅଫିମ ଖାଇ ଝିମଉଛି
ସମଗ୍ର ପ୍ରକୃତି, ଆଉ ଝରୁଛି
ଅବିରଳ ଧାରାରେ ବର୍ଷା ।

ମୁଁ ଧରିଛି ଅତିକାୟ ଗୁଡ଼ି ଏକ
ପ୍ରସାରିତ ଦି'ହାତରେ ଉଡାଇବି ବୋଲି,
ବିଶାଳ ଚଢେଇ ପରି ଯାହା ଯିବ
ଆକାଶକୁ ଭେଦି, ମୋ ହାତରେ
କଲିକତା ଲଟେଇ ଆଉ ମାଞ୍ଜାଦିଆ ଡ଼ୋର,
କିନ୍ତୁ ଏ ପାଗରେ ଗୁଡ଼ି ଉଡ଼େ ନାହିଁ ।

ମନ ବି ଉଡ଼େ ନାହିଁ ଏ ପାଗରେ,
ବସି ଥାଏ ଝର୍କା ପାଖେ ଚୁପଚାପ୍
ସ୍ତବ୍ଧତାରେ ଜାକିଜୁକି ହୋଇ ।
ସୁତୀକ୍ଷ୍ଣ କତୁରୀରେ କିଏ କାଟି
ନେଲା ମନର ଡେଣାକୁ ?

ମନ ଏକ ବିଚିତ୍ର ବିହଙ୍ଗ
ନିମେଷକେ ଉଡ଼ିଯାଏ ଛୁଁଇବାକୁ
ନିଃସଙ୍ଗ ନକ୍ଷତ୍ର, ସ୍ପର୍ଶ କରିବାକୁ ତାର
ନିହତ ତିମିର, ଯାହା ଆଲୋକ
ଠାରୁ ଆହୁରି ଉଜ୍ଜ୍ୱଳ ।
କ୍ରମଶଃ ରାତି ଘୋଟି ଆସେ
ଆଜିର ଏ ନିୟନ ସନ୍ଧ୍ୟାରେ,
କଂକ୍ରୀଟ ଜଙ୍ଗଲ ଭେଦି
ମେଘଙ୍କ ସମ୍ମିଳିତ ଚକ୍ରାନ୍ତକୁ
ପଣ୍ଡ କରି, ଆକାଶରେ ଉଠି ଆସେ
ଅତିକାୟ ବିସ୍ମୟ ପରି
ଜହ୍ନ ଏକ ଚନ୍ଦନ ରଙ୍ଗର ।
ସେ ପିନ୍ଧିଛି ଧଳା ଶାଢ଼ି,
ଚାରିଆଡ଼ ଅତ୍ୟନ୍ତ ଉଜ୍ଜ୍ୱଳ ।
ଆଉ ବର୍ଷା ନାହିଁ ସହରରେ,
ବର୍ଷା ଆଉ ନାହିଁ ।



# ପୁନଶ୍ଚ କୁମ ଅପା

କଥା ଥିଲା ବଡ଼ ହେବାକୁ,
ବଡ଼ ମୁଁ ହେଲିନି ।
କଥା ଥିଲା କୁମ ଅପାକୁ
ଭୁଲି ଯିବି ବୋଲି,
ଭୁଲି ପାରିଲିନି ।
କୁମ ଅପା ସବାରିରେ,
ମୁଁ ତା ପଛେ ଦୌଡୁଛି ।
କୁମ ଅପା ନେଇଗଲା ମୋତେ
ତା କାନିରେ ବାନ୍ଧି,
ବଡ଼ ମୁଁ ଆଉ ହେଲି ନାହିଁ ।

କୁମ ଅପା ଦେଖୁ ନାହିଁ
ଶୋଇ ରହେ କଟକ ସହର
ତା ରାସ୍ତା କଡ଼ରେ
ପାଲିଙ୍କି ଧାଁଉଥାଏ
ଦୋହଲି ଦୋହଲି ।
ମୁଁ ଦୌଡୁଛି ସବାରୀ ସାଥିରେ,
ଛିଡ଼ିଗଲା ଅଣ୍ଟାରୁ ଦଉଡ଼ି,
ଅଧା-ପେଣ୍ଟ ଖସିଗଲା ଅଚାନକ
ପକେଟରୁ ପଡ଼ିଗଲା ଭଙ୍ଗା ପେଁକାଳି
ଆଉ ମୃତ ଏକ ପ୍ରଜାପତି ଶବ,
କିନ୍ତୁ ଦୌଡ଼ା ମୋର ବନ୍ଦ ହେଲା ନାହିଁ,
ମୁଁ ଦୌଡୁଛି ପ୍ରାଣପଣେ ପେଣ୍ଟକୁ
ଜାକି ଧରି ଗୋଟିଏ ହାତରେ,
ଆଉ ମୁଁ ବଡ଼ ହେଲି ନାହିଁ ।

କୁମ ଅପା ଜାଣୁ ନାହିଁ
କଟକର ଜହ୍ନ ପୁଣି ଫେରି
ଫେରି ଆସେ ବାରମ୍ବାର
ତା ସହରକୁ,
ଦେଖିବାକୁ ତାକୁହିଁ କେବଳ ।
କଟକ ଗଳିର ଛାଇ
ଯିଏ ସବୁ ଶୋଇଥାନ୍ତି
ରାସ୍ତା କଡ଼ରେ,
ସିଏ କିନ୍ତୁ ଯିବେ ନାହିଁ
ତା ସହର ଗାଧୁଆ ତୁଠକୁ ।
କାଠଯୋଡ଼ି ନଈ କଣ
ତା ହାତ ପାଆନ୍ତାରେ ଅଛି,
ସନ୍ଧ୍ୟା ହେଲେ ଯା ବାଲିରେ
ଅନ୍ଧାର ଓହ୍ଲାଏ ?
ଆଉ ଗାଈମାନେ
ଫେରନ୍ତି ପଠାରୁ ହମ୍ବାରଡ଼ି ଛାଡ଼ି ?

କୁମ ଅପା କହିଥିଲା
ଗୋଲାମ ଚୋରୀର ଖେଳ
ଶିଖାଇବ ବୋଲି
ସେ କିନ୍ତୁ ଶିଖାଇଲା ନାହିଁ ।
ମୋ ମନରେ ପ୍ରଶ୍ନ ଆସେ,
କାହିଁକି ଦିନେ ଦିନେ
ଉଦାସୀ ପବନରେ ମୁହଁ ମାଡ଼ି
କାନ୍ଦୁଥାଏ ସିଏ ?
ପଚାରିଲେ ସେ କହିଲା,
ବଡ଼ ହେଲେ ଆପେ ଆପେ
ବୁଝିଯିବି ବୋଲି ।
ମୁଁ ଆଉ ବଡ଼ ହେଲି ନାହିଁ ।

ପାଣ୍ଡୁର ମୁହୂର୍ତ୍ତରେ ଦିନେ ଦିନେ
ବାଜିଉଠେ ସାଇକଲ ଘଣ୍ଟି
କ୍ରିଂ – କ୍ରିଂ – କ୍ରିଂ ।
କୁମ ଅପା ଦୌଡ଼ି ଯାଏ
ଝର୍କା ପାଖକୁ ସବୁ କାମ ଭୁଲି,
କାହା ପାଇଁ କେହି ଜାଣେ ନାହିଁ ।

କୁମ ଅପା କଣ ଜାଣେ ନାହିଁ
କଟକ ଆକାଶର ରଙ୍ଗ
ବେଳେ ବେଳେ ଫୁଟି ଉଠେ
ଗୋଧୂଳି ବେଳାରେ ତା ସହରରେ ?
ଆଉ କାନି-ଫଟା ଗୁଡ଼ି ହୋଇ
ମୋ ଶୈଶବ ଝୁଲୁଥାଏ ଅଶ୍ୱତ୍ଥ ଡାଳରେ ?

ବଡ଼ ମୁଁ ଆଉ ହେଲି ନାହିଁ ।

■■■

# ରାତି

କିଛି ଅନ୍ଧାର କିଛି ସ୍ୱପ୍ନ
ଆଉ କିଛି ନିହତ ନକ୍ଷତ୍ରଙ୍କ
ଯୋଗଫଳ ।
ମୋ ହୃଦୟରେ ବିପୁଳ କୁହୁଡ଼ି,
ସେମାନେ କ୍ରମାଗତ ଉପରକୁ
ଉଠୁଛନ୍ତି
ସେହି ସବୁ ନକ୍ଷତ୍ରମାନଙ୍କୁ
ଛୁଇଁବାକୁ ।

ଯେଉଁମାନେ ପ୍ରାର୍ଥନାରେ ନତ
ହୋଇ ସମର୍ପଣ କରନ୍ତି ନିଜକୁ,
ସେମାନଙ୍କୁ ତୁମ ଛାତିରେ
ଆଶ୍ରୟ ଦିଅ ।
ଯେଉଁମାନେ ସନ୍ତୁଳି ହୁଅନ୍ତି
ଯନ୍ତ୍ରଣାରେ,
ସେମାନଙ୍କୁ ଦିଅ ବିସ୍ମରଣ ।

ତୁମର ଦକ୍ଷ ଅଙ୍ଗୁଳି
ଅନ୍ଧାରର ଅବୟବ ଛୁଁଇ ଛୁଁଇ
କ୍ରମଶଃ ଓହ୍ଲାଇ ଆସୁ
ଆଖିରେ ମୋହର
ସ୍ୱପ୍ନ ବୋଳିବାକୁ ।
ଜହ୍ନର ଜୁଆରରେ ମୋ ତକିଆ
ଓଦା କରି ଦିଅ, ଆଉ
ଦୁଇ ଆଖି ମୁଦି ଦିଅ
ନିଦର ଅଠାରେ ।



# ଦହନ

ସବୁକିଛି ପୋଡ଼ି ଯାଏ
ଗୋଟି ଗୋଟି କରି,
ନଭଶ୍ଚୁମ୍ବୀ ଗର୍ବ ଆଉ
ଖ୍ୟାତିର ଯେତେ ବିଡ଼ମ୍ବନା,
ପୋଡ଼ିଯାଏ ହୁ-ହୁ ହୋଇ
ଚନ୍ଦନ କାଠରେ ଥରେ
ନିଆଁ ଧରି ଗଲେ ।
ବିରାଟ ବଟ ବୃକ୍ଷ ଏବଂ
ତା' ସହସ୍ର ଓହଳ,
ସବୁ ପୋଡ଼ି ପାଉଁଶରେ
ପରିଣତ ହୁଏ ଦେଖୁ ଦେଖୁ ।
ଚିତାରେ ଥରେ ନିଆଁ ଲାଗିଗଲେ
ସ୍ନେହ, ପ୍ରେମ, ମମତାର
ସବୁ ଅନୁଭୂତି, ହୃଦୟ କନ୍ଦରରେ
ସାଇତା ଗୋପନ ବାସନା,
ସହସ୍ର ଚୁମ୍ବନ, ଆଉ ସବୁ
ଆଲିଙ୍ଗନ, ଚାହୁଁ ଚାହୁଁ
ପୋଡ଼ି ହୋଇଯାଏ ।
ଫୁଲଙ୍କ ମୃତ ଶରୀରରେ
ଜ୍ୱଳି ଉଠେ ନିଆଁ,
ଶୁଭ୍ର ଚଦରରେ ଢଙ୍କା
ଦେହଟା ପଡ଼ିଥାଏ ଖାଲି
ପୁଲକ ବା ଶିହରଣ

ସେ ଦେହରେ ନାହିଁ,
ସେ ଦେହ ତ ପୋଡ଼ି ଯିବ
ଅତି ସହଜରେ ।
ଘରର ରିକ୍ତ ଅଳିନ୍ଦ
ଖାଁ-ଖାଁ ଗୋଡ଼ାଏ
ଶୋଇଲା ଘରର ଖଟ
ଶୂନ୍ୟ ଆଜି,
ନିହତ ଗୋଧୂଳି ତାର ସମର୍ପିତ
ଛାଇ ନେଇ ମରଣକୁ
ଖାଲି ଝୁରୁଥାଏ ।
ଏଥର ଅପର୍ଯ୍ୟାପ୍ତ ଶୀତ ଋତୁ,
ନିର୍ବାପିତ ସକଳ ଦହନ,
ଶୀତର ଅସରନ୍ତି ସ୍ପର୍ଶ
ହାଡ଼ରେ ହାଡ଼ରେ ।
ଦୂରରେ ମିଳାଇ ଯାଏ
ଯାଯାବର ପକ୍ଷୀଙ୍କ କାକଳୀ,
ସେମାନେ ଘରକୁ ଫେରିବେ ଏଥର ।
ବଡ଼ ବେଶି ଚୁପ୍ ଚାପ୍ ଚାରିଆଡ଼,
ନିଃସଙ୍ଗ ନୈଶବ୍ଦ୍ୟ ଆଜି
ଚୌଦିଗରେ ବିଛାଡ଼ି ପଡ଼ିଛି ।

■■■

# ଈଶ୍ୱର ଶୋଇଛି

ହେମନ୍ତ ଗ୍ରାସିଅଛି ଚରାଚର ।
ପୃଥିବୀର ପ୍ରତ୍ୟନ୍ତ କୋଣରେ
କୌଣସି ଏକ ବିଷଣ୍ଣ ସୁଡ଼ଙ୍ଗ ଭିତରେ
ନିର୍ବାସିତ ଈଶ୍ୱର ଶୋଇଛି ।
ଉଦାସୀନ ସନ୍ନ୍ୟାସୀ ପରି
ଦୀର୍ଘ ଜଟାଜୁଟ,
ଦେହ ତାର ପାଁଉଶରେ ବୋଳା,
ଦୃଷ୍ଟି ତାର ଈଷତ୍ ମାୟାବୀ,
କେଉଁ ଆଡ଼େ ଅନାଇଛି
ନିର୍ଦ୍ଦିଷ୍ଟ ଦିଗ କିଛି
ବାରି ହେଉ ନାହିଁ ।
ସେ ଶୋଇଛି ନିଘୋଡ଼ ନିଦରେ,
ନିଃଶ୍ୱାସ ନେବାର ଶବ୍ଦ
ଶୁଭୁ ଅଛି ଖାଲି ।
ସେ ଗୋଟାଏ ଭଗ୍ନସ୍ତୁପ,
ଗଛ ନୁହେଁ, ଗଛର ଛାଇ ମାତ୍ର ସିଏ,
ବସନ୍ତର ଅଙ୍କୁରିତ ପଦଧ୍ୱନି
ଶୁଣି ମଧ ଶୁଣି ପାରୁ ନାହିଁ ।
ଈଶ୍ୱର ଶୋଇଅଛି ଆକଣ୍ଠ ଧୂଳିରେ ।
ଫୁଲଙ୍କ ପ୍ରସ୍ଫୁଟିତ ହେବାର ଯନ୍ତ୍ରଣା
ବୁଝିପାରୁ ନାହିଁ ।

ଈଶ୍ୱର ଶୋଇଛି ଦେଖ
ହେମନ୍ତକୁ ଘୋଡ଼ି-ଘାଡ଼ି ହୋଇ ।
ଚୈତନ୍ୟର ଗଭୀରରେ କିଛି ହାହାକାର
ଆଉ କରୁଣାର କିଞ୍ଚିତ୍ ବ୍ୟଞ୍ଜନା
ଗୋଳି-ଗାଳି ସେ ସବୁକୁ
ଆତ୍ମସାତ୍ କରିଛି କେବଳ ।
ପୃଥିବୀରେ କେହି ସୁଖୀ ନୁହେଁ,
ଉଦାସୀନ ଶବ୍ଦଙ୍କ ଭିତରେ
କିଛି କ୍ରିୟାପଦ ପରି
ଈଶ୍ୱର ଖାଲି ପଡି ରହେ ।
ଈଶ୍ୱର ପଥର ନୁହଁେ,
ପଥରରେ ନଖର ଚିହ୍ନ,
ଭଗ୍ନ ଶବ୍ଦମାଳା,
ଯଦି କେଭେ ଫୁଟି ଉଠେ,
ଜାଣିବ ତା ହେଲେ ନିଶ୍ଚେ,
ଈଶ୍ୱର ଆଉ ଉଠିବନି
ତା ନିଦରୁ ଅବସିତ ?
ଜୋଛନା ଭିତରେ ।

■■■

# ଭୁବନେଶ୍ୱରୀ

ମୁଁ ଦେଖିଛି ପୃଥିବୀର ରୂପ,
ଆକଣ୍ଠ କରିଛି ପାନ
ସେ ରୂପ ସୁଧାକୁ,
କିନ୍ତୁ ଶୋଷ ମେଣ୍ଟି
ନାହିଁ ମୋର ଆଜି ବି ।
ସେ ରୂପରେ ଅଜସ୍ର ବିଭଙ୍ଗ
ବହି ଯାଏ ରୂପର ତରଙ୍ଗ,
କେତେ ଯେ ଲହଡ଼ି
ତାର ସୀମା ସଂଖ୍ୟା ନାହିଁ ।

ତା ରୂପରେ ମୁଁ ହୋଇଛି ଅନ୍ଧ,
ଧୈର୍ଯ୍ୟର ସବୁ ବନ୍ଧ
ନିମେଷକେ ଭାଙ୍ଗିଯାଏ
ଦିଗ ମୁଁ ହଜାଏ ।
ପୃଥିବୀକୁ ଅନନ୍ତ ରୂପସୀ
ବୋଲି କହିଲେ ବି
କିଛି ହେଲେ କୁହା ହେଲା ନାହିଁ ।

ମୃତ୍ୟୁ ପରେ ପୁଣି ଯଦି
ଜନ୍ମ ବୋଲି କିଛି ହେଲେ ଥାଏ.
ମୁଁ ନଶ୍ଚେ ଆସିବି ଫେରି
ଏହି ପୃଥିବୀକୁ, ତା ରୂପ କେବଳ
ଦେଖିବ ।
ହୁଏତ ବା ମଣିଷର ଦେହ
ପାଇବିନି,

ଦୁର୍ଲଭ ମଣିଷ ଜନ୍ମ ନ ପାଇଲେ ବି
କିଛି ହେଲେ ଯାଏ ଆସେ ନାହିଁ ।
ଯେତେବେଳେ ପୃଥିବୀକୁ ସନ୍ଧ୍ୟା
ନଇଁ ଆସେ,
ଛାଇ ମାନେ ଫେରନ୍ତି ଘରକୁ,
ମୁଁ ଆସିବି ବଗ କିମ୍ବା ହଂସରାଜି ହୋଇ
ନଈପଠା କରେ କରେ
କାଶତଣ୍ଡୀ ବଣ ତଳେ ତଳେ
ଛପି ଛପି ଛାଇ-ଆଲୁଅରେ ।
ମୁଁ ଦେଖିଛି ବର୍ଷାର
ଅପରୂପ ଶୋଭା,
ଯେତେବେଳେ ପୃଥିବୀ
ତା ବାଳ ଖୋଲି ଦିଏ ।
କଳାକୃଷ୍ଣ କେଶରାଶି ଭିଜୁଥାଏ
ଅଲରା ଭାବରେ ।
କୋଟି ଲାବଣ୍ୟରେ
ପୂର୍ଣ୍ଣ ତନୁଲତା,
ହେ ଭୁବନେଶ୍ୱରୀ, ତୋ ଦେହ- ବଲ୍ଲରୀ
ଅତି କମନୀୟ ।
କଳା ମେଘେ ମୁଁ ଦେଖିଛି
ବିଜୁଳୀର ଛଟା,
କିମ୍ବା ଧାଡ଼ିଏ ବଳାକା
ଉଡ଼ି ଉଡ଼ି ଯାଉଛନ୍ତି ଚାଲି
ମୁଁ ଦେଖିଛି ଇନ୍ଦ୍ରଧନୁ
ଧରିତ୍ରୀର ଛାତି ଛୁଇଁ
ହୋଇଅଛି ଉଭା ।

ପ୍ରଚଣ୍ଡ ନିଦାଘରେ ଏ ପୃଥିବୀ
ପୋଡ଼ି-ଜଳି ଯାଏ,
ଚାରିଆଡ଼େ ଡାହାଣୀ ଖରାର
ନିଃଶ୍ୱାସ,
ପୃଥିବୀର ସବୁ ରକ୍ତ
ଶୋଷି ନିଏ ସିନା ।

ପର୍ଣ୍ଣମୋଚୀ ଗଛମାନେ
ଅପେକ୍ଷା କରନ୍ତି ଶୀତକୁ,
ସେ ତ ଏକ ଯାଯାବର
ଏଠି ସେଠି ଘୂରି ବୁଲୁଥିବ ।
ସରିଗଲେ ହେମନ୍ତର ରାତି
ମାଛକାତି ମେଘମାନେ
ଆକାଶରୁ ଥରେ ଘୁଞ୍ଚି ଗଲେ,
ସମସ୍ତେ ଆସିବେ ଫେରି
ପୃଥିବୀ ଘରକୁ,
ବସନ୍ତ ବା ଶୀତ ହୋଇ
ପୃଥିବୀକୁ ସଜାଇବେ ବୋଲି ।

■■■

# ମୃତ୍ୟୁ ଚିରଜୀବୀ ହେଉ

ପଡ଼ିଛି ମୃତ୍ୟୁର ଶବ
ମଶାଣି ପଦାରେ,
ନିରଙ୍କୁଶ ପବନରେ
ଶତାବ୍ଦୀ ଶତାବ୍ଦୀବ୍ୟାପୀ
ହାହାକାର ଡେଇଁ
କିଏ କାନ୍ଦେ ମୃତ୍ୟୁ ଲାଗି
ଛାତି ପିଟି ହୋଇ,
ମୃତ୍ୟୁ କଣ ସତେ ମରିଗଲା ?
ଚନ୍ଦନ କାଠର ଚିତା
ମୃତ୍ୟୁ ଲାଗି କିଏ ସେ ସଜାଏ,
କିଏ ବା ବିଧବା ହେଲା
ମୃତ୍ୟୁ ମରିଗଲେ ?
କିଏ ବା ଲଙ୍ଗଳା କଲା
ହାତକୁ ତା ଶଂଖାକୁ ଓହ୍ଲାଇ ?
ଯେଉଁମାନେ ଭୋଗିଛନ୍ତି
ଆଣ୍ଠୁକୁଡା ସ୍ୱାମୀଙ୍କ ଦୌରାତ୍ମ୍ୟ
ଯେଉଁମାନେ ସହିଛନ୍ତି ଅସହିଷ୍ଣୁ
ଶାଶୁଙ୍କ ଗଞ୍ଜଣା, କିମ୍ବା ନଣନ୍ଦଙ୍କ ନିର୍ମମ ହସ,
ସେହି ସବୁ ଅଲୋଡା ତରୁଣୀମାନେ ଆଜି
ଖୋଜୁଛନ୍ତି ନୀଳ କିରାସିନ୍,
ଶୀତଳ କୂଅର ପାଣି, ତୀବ୍ର ଫଲିଡଲ,
ଅଥବା ଗଛରେ ଝୁଲିବା ପାଇଁ
ଶାଢ଼ିର ବିଶ୍ୱସ୍ତ ପଣତ ।

ହିନିମାନୀ ଜୀବନରେ ମୃତ୍ୟୁ
ପରି ନିଶ୍ଚିନ୍ତ ଆଶ୍ରୟ
ଖୋଜିଲେ ବି ଆଉ ମଳେ ନାହିଁ
ପୃଥିବୀଟା ବଡ଼ ଟଳମଳ,
ପ୍ରତିଟି ପଦକ୍ଷେପ ଖସିଯାଏ
ବିପରୀତ ଦିଗକୁ କେବଳ ।

ମୁଁ କହୁଛି ମୃତ୍ୟୁ ବଞ୍ଚିଥାଉ
ଯେମିତି ବଞ୍ଚିଥାଏ ହେମନ୍ତ ବା
ଶୀତ ଋତୁ ପ୍ରତି ଜୀବନରେ ।
ଶରୀରର ସବୁ ରୋଗ ଜରା-ବ୍ୟାଧି,
ତୃପ୍ତିହୀନ ହୃଦୟର ଭାଷ୍ୟ,
ଶୁଣିବାକୁ କେହି ହେଲେ ଥାଉ ।

ମୃତ୍ୟୁ ଏକ ଅମୋଘ ନିୟତି,
ସେ ନିଶ୍ଚେ ଆସିବ ଦିନେ,
ନକ୍ଷତ୍ରର ଆଲୁଅରେ ବାଟ ଖୋଜି ଖୋଜି
ନିରନ୍ଧ୍ର ଅନ୍ଧାର ଭିତରେ ।
ସରିଯାଉ ବଞ୍ଚିବାର ସବୁ ଅଭିଶାପ
ମୃତ୍ୟୁ ପୁଣି ଚିରଜୀବୀ ହେଉ ।

■■■

# ବିଷାକ୍ତ ବଳୟ

ସଭ୍ୟତାରେ ନିଆଁ ଲାଗିଅଛି,
ପୋଡ଼ିଯାଏ ନଗର, ବଜାର ।
ହୁ-ହୁ ହୋଇ ଜଳୁଥାଏ
ମନ୍ଦିର, ମସଜିଦ୍,
ଥରି ଉଠେ ବାସୁକୀର ଫଣା,
ନିଶ୍ୱାସ ରୁନ୍ଧି ହୋଇ ଯାଏ
ବିଷାକ୍ତ ବାଷ୍ପରେ ।

ଯନ୍ତ୍ରଣାରେ ନଇଁ ପଡ଼େ
ଧାନଗଛ, ବିଲ ସବୁ
ଶୁଖିଯାଏ ପ୍ରଚଣ୍ଡ ଖରାରେ ।
ପାଳଭୂତ ଠିଆ ରହେ
ଗୋଟିଏ ଗୋଡ଼ରେ
ମୂକ ସାକ୍ଷୀ ପରି ।
କଣ ସେ କରିବ ଭଲା
ଧାନ ମରିଗଲେ ?

କୁହୁଡ଼ିରେ ଆବିଳ ପରିଧି,
ବିପନ୍ନ ପୃଥିବୀ ଆଜି,
ଯନ୍ତ୍ରଣାର ସ୍ପଷ୍ଟ କଳେବର
ଫୁଟି ଉଠେ ଫୁଲର ପ୍ରତି ପାଖୁଡ଼ାରେ ।
ମୂହ୍ୟମାନ ଫୁଲ ସବୁ
ଲୁଣ୍ଠିତ ସୁରଭି ।
ବନସ୍ତରେ ନିଁଆ ଲାଗେ
ଜ୍ୱଳିଯାଏ ଆଦିମ ପ୍ରକୃତି ।

ଅସହାୟ ବନସ୍ପତି ଟଳି ପଡ଼େ
ବେଦନାରେ,
ନିଁଆ ଧାସ ସହି ପାରେ ନାହିଁ ।
ତୃଣଭୂମି ମରୁଭୂମି ଆଜି
ଲୁଚିବାକୁ ଗାତ ଖୋଜେ
ବିବ୍ରତ ବିଲୁଆ,
ଯାଯାବର ପକ୍ଷୀ କେହି
ଆସେ ନାହିଁ ଫେରି
ନୀଡ଼ ସବୁ ଖାଲି ପଡ଼ିଥାଏ ।
ଖୋଜି ଖୋଜି ମାଛରଙ୍କା
ମାଛ ପାଏ ନାହିଁ,
ତୁନୀ ହୋଇ ବସି ରହେ
କ୍ଲାନ୍ତ -ଡେଣା ଚିଲ
ପୋଖରୀ ହୁଡ଼ାରେ ।
ହୃଦୟ ବି ନିଃସ୍ୱ ହୋଇଯାଏ,
ଆଉ ଏକ ହୃଦୟକୁ
ନିକଟରେ ପାଇବାକୁ
ଖୋଜେ ନାହିଁ ନିଭୃତ ନିଳୟ ।
ନିଃଶ୍ୱାସରେ ବିଷକ୍ରିୟା
କ୍ରମେ ତୀବ୍ର ହୁଏ,
ନାଭିଶ୍ୱାସ ଉଠେ,
ସ୍ନାୟୁ ସବୁ ଖସି ପଡ଼େ
ଦେହ ଅଳିନ୍ଦରୁ,
ଶୁକ୍ରହୀନ ଦେହ ଖାଲି
ଠିଆ ରହେ ଅନ୍ଧାର ଭିତରେ
ନିଁଆରେ ଦଗ୍ଧ ହେବ ବୋଲି ।

■ ■ ■

# ନିତାନ୍ତ ନଶ୍ୱର

ମୁଁ ଯେମିତି ଅତର୍କିତେ
ବୁଢା ହୋଇଗଲି,
ପାରେ ନାହିଁ ହସି ଆଉ
ପାକୁଆ ପାଟିରେ ।
କେହି ଆଉ କହିବେନି
ଲୋକଟା ଚାଲୁଛି କୁଜା ହୋଇ;
କିମ୍ୱା ତା ଆଖିରେ ପ୍ରବଳ ପରଳ ।

ମୁଁ ପାଇଛି ବହୁ କିଛି
ପ୍ରିୟ ଜନଙ୍କ ଠାରୁ
ନିଃସର୍ତ୍ତ ଭାବରେ ।
କିନ୍ତୁ ମୁଁ ପାରି ନାହିଁ ଦେଇ,
ଯାହା ମୋର ଜୀବନରେ
ଅସରନ୍ତି ପ୍ରସ୍ତାବ ହୋଇ
ରହିଗଲା ସବୁ ଦିନ ପାଇଁ ।

ବାହାରେ ଯୁବତୀ ଖରା,
ଖରାର ସବୁ ଅବୟବ,
ନିତମ୍ୱ ଓ ବର୍ତ୍ତୁଳ ବକ୍ଷୋଜ
ଅତ୍ୟନ୍ତ ପ୍ରକଟ ।
ମୁଁ କିନ୍ତୁ ଭାବୁଅଛି
ଏ ସବୁ ନିତାନ୍ତ ନଶ୍ୱର,
ଯିଏ ମୋତେ ଦେଖାଇଲା
ମୃତ୍ୟୁକୁ ସାବଲୀଳ ସରଳ ଭଙ୍ଗୀରେ,
ଯିଏ ମୋତେ ଚିହ୍ନାଇଲା

ଦୂର ପାହାଡକୁ,
ଯାହା ସବୁ ବେଳେ
ବୁଡ଼ି ଥାଏ ମ୍ଳାନ କୁହୁଡ଼ିରେ !
ସେ ଆଜି କୁଆଡ଼େ ଗଲା
କେଉଁଠି ବି ତା'ର କିଛି
ଚିହ୍ନ-ବର୍ଣ୍ଣ ନାହିଁ ?

ମୋ ସାମ୍ନାରେ ଶହେ ପ୍ରଜାପତି,
ସେମାନେ ମୋ ସ୍ୱପ୍ନକୁ
ମୋହମୟ କରିବାକୁ
ନିଜକୁ ବଳି ଦେଇଛନ୍ତି
ରାସ୍ତାର ପ୍ରତିଟି ମୋଡ଼ରେ ।
ତଥାପି ମୋ ତୃଷା ମେଣ୍ଟିନାହିଁ
ମୋ ପିପାସାର ହ୍ରଦ
ଚିକ୍ ଚିକ୍ ହୋଇ ଜଳୁଛି
ସମୁଦ୍ରକୁ ଆତୁଆଳ କରି,
ଯେଉଁଠି ହଜି ଯାଇଛି
ମୋର ସମସ୍ତ ରାସ୍ତା ।

ବ୍ୟାଧିର ଅବ୍ୟର୍ଥ ଦାଗ
ମୋ ଦେହରେ ଫୁଟି
ଉଠିଅଛି ।
ବଳି ରେଖା ଅଜସ୍ର ଅଜସ୍ର ।
ମୁଁ ଠିଆ ହୋଇଛି
ଏକ ଥୁଣ୍ଟା ଗଛ ପରି,
ମରୁଭୂମି ଉଷର ବାଲିରେ,
ନିବକାର ଯୁଗ ଯୁଗ ଧରି

■■■

# ବାସ୍ନା

ଶୈଶବର ବାସ୍ନା ଅଛି,
କୈଶୋର ବି ବାସ୍ନାହୀନ ନୁହଁେ,
ପ୍ରଚୁର ବାସ୍ନା ଅଛି ଲାଲିଗୁଡ଼,
ମାଞ୍ଜାଦିଆ ଲଟେଇ ସୂତାରେ।
ବେଳେ ବେଳେ ମନେ ପଡ଼େ
କୁହୁଡ଼ିରେ ନାଳ ନଈପଠା,
ଦୂରରେ ମୋ ପ୍ରିୟ ଗାଁ,
ଯାହା ଠିଆ ରହେ ଦିଗନ୍ତ ଆଉଜି
ଅଳସ ଭଙ୍ଗୀରେ।
ଆମ୍ବବଉଳ ମହକରେ ଆଚ୍ଛନ୍ନ
ନିର୍ଜନ ମଧ୍ୟାହ୍ନ,
କପୋତର ବାହୁନା ବି ଖୁବ ମନେ ପଡ଼େ।

କାଶତଣ୍ଡୀ ବଣରେ ହିଲ୍ଲୋଳ,
ପବନ କଥା କହେ ତା ସାଥିରେ,
କାଶତଣ୍ଡୀ ନଇଁ ନଇଁ ପଡ଼େ
ନୃତ୍ୟର ଭଙ୍ଗୀରେ କେବଳ
କେତେବେଳେ ପବନ ଯେ ଯାଇଛି ଡ଼େଇଁ
ଏହି ନଈପଠା, କେହି ଜାଣେ ନାହିଁ।

ବାସ୍ନା କିଛି କମ ନୁହଁେ
ଶୀତ, ବର୍ଷା, ହେମନ୍ତ ବା ଶରତ ଋତୁର।
ପ୍ରତିଟି ଋତୁର ବାସ୍ନା ଭିନ୍ନ ଭିନ୍ନ
ରୂପ ବି ସ୍ୱତନ୍ତ୍ର।
ନିଦାଘରେ ଫାଟେ ଭୂଇଁ,

ଆମ୍ବତୋଟା ନିଛାଟିଆ ଲାଗେ,
କୋଇଲୀର ଡାକ ଶୁଭୁଥାଏ ।
ଝଡ଼ ଆସେ ବୈଶାଖ ମାସରେ,
ସବୁ କିଛି କରିଦିଏ
ଓଲଟ-ପାଲଟ ମୁହୂର୍ତ୍ତ ଭିତରେ ।
ଜହ୍ନ ଉଁଏ ଆକାଶରେ
ନଈପଠା ଅଥବା ସହରର
ପ୍ରଶସ୍ତ ଛାତରେ ଢାଳି ଦିଏ
ଅକାତରେ ଜୋଛନା ମହଣ ମହଣ
ଯାହାର ସ୍ୱତନ୍ତ୍ର ବାସ୍ନା
ଭୁଲି ହୁଏ ନାହିଁ ।
ବାସ୍ନା ଅଛି ନାରୀର ଛାତିରେ
ସେ କିନ୍ତୁ ଜାଣେ ନାହିଁ
ତା ଦେହରେ ଏତେ ମୃଗନାଭି,
ସେ ଏକ କସ୍ତୁରୀ ମୃଗୀ
ବାଟବଣା ସଂସାରର ଜଙ୍ଗଲ ଭିତରେ ।

■■■

# ନିର୍ମଳ ହୃଦୟ

ଉରୁଦ୍ୱୟ, ନାଭି ଏବଂ
ନିତମ୍ବର ପାଖାପାଖି ଜଂଘର ଠିକଣା,
କଣ ହେବ ଖୋଜି କହ
ସେହି ଅନ୍ଧାରୁଆ ପିଚ୍ଛିଳ ଗହ୍ୱର,
ଯଦି ରହେ ହୃଦୟ ଆବୃତ
ଚିର ଦିନ ପାଇଁ ?

କିଛି ହେଲେ ଶାଳୀନ ବା ଅଶାଳୀନ
ନୁହେଁ,
ଜାରଜ ଶବ୍ଦକୁ ବାଦ ଦିଅ ଶବ୍ଦକୋଷରୁ ।
ଅନାବୃତ ହୃଦୟ କିନ୍ତୁ ନିରାପଦ ନୁହେଁ
ସେ ଶୋଇଥାଉ ଧବଳ ଶେଯରେ
ଥାକ ଥାକ ଧୋବ ଲୁଗା ପରି,
ଚନ୍ଦନ ଗୁଗ୍ଗୁଳ ବୋଳା ନିଘୋଡ଼ ନିଦରେ ।

ଅନାବୃତ ହୃଦୟ କିନ୍ତୁ ସର୍ବଦା ନିର୍ମଳ
ହୃଦୟରେ ଭରି ଥାଉ ପ୍ରାଚୀନ ଫସିଲ,
ପାପ, ଘୃଣା, ଈର୍ଷା ପରି ମଳିନ ଶବ୍ଦ ସବୁ
କ୍ରମଶଃ ପାଲଟୁ ପଥର ।
ଅରଣ୍ୟକୁ ଯିବ ବୋଲି ଏଥର
ସେ ଟିକଟ କାଟିଛି ।
ଅରଣ୍ୟକୁ ରେଳ ରାସ୍ତା ନାହିଁ,
ଲୋକାଳୟ ଠାରୁ ତାହା ବହୁତ ଦୂରରେ,
ପୃଥିବୀର ପ୍ରତ୍ୟନ୍ତ ସୀମାରେ
ଯିବାକୁ ତ ହେବ !

ପରସ୍ତ ପରସ୍ତ କରି ମନୋହାରୀ
ସୁଦୃଶ୍ୟ ଶବ୍ଦରେ ହୃଦୟକୁ
ଘୋଡାଇ ରଖ ମୂଲ୍ୟହୀନ
ଲୋକଙ୍କ ଲୋଲୁପ ଦୃଷ୍ଟିରୁ,
ସେମାନେ ସମସ୍ତେ ଅନାବୃତ
ହୃଦୟ ଖୋଜନ୍ତି କୁତ୍ସିତ
ଆଖିରେ କେବଳ ।

■■■

# କଳଙ୍କର ରଙ୍ଗ ଧଳା

କଳଙ୍କର ରଙ୍ଗ ଧଳା,
କିଏ କହେ ତାହା କଳା ବୋଲି ?
ଯେଉଁ ନାମେ ମୁଖର ଜଗତ
ସେ କେଭେ କି କଳା ହୋଇପାରେ ?
କଳଙ୍କବତୀ ନାରୀମାନେ
ରୂପସୀ ଓ ଗରିମାରେ ଅତି ଦୀପ୍ତିମତୀ,
ସେମାନେ ଜାଣିଛନ୍ତି ପ୍ରେମ କରି,
ଜାଣିଛନ୍ତି ହଜାଇ ଦେବାକୁ ନିଜକୁ
ପ୍ରେମିକର ବାହୁ ବନ୍ଧନରେ
ମୁଁ କହୁଛି ରାଧା କଥା
ସମସ୍ତେ ଜାଣନ୍ତି ତାକୁ
ସମସ୍ତେ ପୂଜନ୍ତି ।

ପାପ ନାହିଁ ଭଲ ପାଇବାରେ,
ରାଧା ସତ ସତ ପାଉଥିଲା ଭଲ,
ଶୁଣିଥିଲା ମନ୍ତୁରା ରାଗିଣୀ,
ଯାହା ଭାସି ଆସେ
ନିଶିଥିନୀ ଚୂରମାର କରି,
ଆଉ ଟାଣି ନିଏ ଚୁମ୍ବକ ପରି
ଭାଙ୍ଗି ଦେଇ ଧୈର୍ଯ୍ୟର ସବୁ ପ୍ରତିବନ୍ଧ ।
ରାଧା କଣ ହୋଇଥିଲା ଅନ୍ଧ ?

କଳଙ୍କରେ ପାପ ନାହିଁ ତିଳେ,
ସେ ସବୁ ମିଛ କଥା
ରାଧା ପରି ଜାଣନ୍ତି ସକଳେ ।

ଛାତିରେ ହାତ ଦେଇ
କେ କହିବ ସେ କଳଙ୍କିନୀ ନୁହେଁ,
କଳଙ୍କ ଅତି ଶୁଭ୍ର
ଠିକ ଆମ ଚନ୍ଦ୍ରମାର ପରି
ତା ଦେହର ଛବି କିନ୍ତୁ
ଅତ୍ୟନ୍ତ ପ୍ରକଟ,
ସୂତା କାଟେ ବୁଢ଼ୀ ଜଣେ
ଚଲାଇ ଅରଟ ।

କୃଷ୍ଣ ଏକ ଲମ୍ପଟ ଈଶ୍ୱର
ରାଧାକୁ ଛାଡ଼ି ଦେଇ
ଦ୍ୱାରକାକୁ ଗଲେ
ଆଉ ଫେରିଲେନି ।
ରାତି ଓହ୍ଲାଏ ରକ୍ତ ପରି
ରାଧାର ପ୍ରତିଟି ଶିରାରେ,
କିନ୍ତୁ ହାୟ ବଂଶୀ ଧ୍ୱନି
ଆଉ ଶୁଭେ ନାହିଁ,
ରାଧା କାଟେ ବିନିଦ୍ର ରଜନୀ ।

ଜାରଜ କଦାପି ନୁହଁ କୁମାରୀର ଭ୍ରୁଣ,
ତା ଗର୍ଭରେ କଳଙ୍କ ଲାଗିନି,
ସେ ଶୋଇଛି ନିଷ୍ପାପ ତରୁଣୀ,
ପ୍ରସବର ବେଦନାରେ ମ୍ଳାନ ।
ସିନ୍ଦୂରର ଲାଲି ରେଖା
ସୀମନ୍ତରେ ଥାଉ ବା ନଥାଉ
କେହି ହେଲେ କଳଙ୍କିନୀ ନୁହେଁ ।
କଳଙ୍କର ରଙ୍ଗ ଧଳା,
କଳଙ୍କର ରଙ୍ଗ ରକ୍ତ ପରି,
କଦାପି ତା କଳା କିନ୍ତୁ ନୁହେଁ ।

■■■

# ଏକାନ୍ତ ପାର୍ଥିବ

ପୃଥିବୀକୁ ଗ୍ରାସିଛି ବିଷାଦ,
ଚାରିଆଡ଼େ ସ୍ତୂପାକାର ପ୍ରଜାପତି
ଶବ ପଡ଼ି ରହେ ।
ଏ ବଡ ନିଷ୍ଠୁର ବ୍ୟାଧି
କୋରି କୋରି ଖାଉଅଛି
ପୃଥିବୀର ଛାତି ।
ଗୋଲାପରେ ବାସ୍ନା ନାହିଁ,
ଫୁଲ ବୋଲି ଚିହ୍ନି
ହୁଏ ନାହିଁ ।
ପବନ ବହି ଯାଏ
ହାହାକାର ପରି ।
ପୃଥିବୀରେ ଏତେ ଦୁଃଖ
ଏତିକି ଯନ୍ତ୍ରଣା,
କିଏ ଜାଣିଥିଲା ?
ପୃଥିବୀ କ୍ଷୟ ହୁଏ
ତିଳ ତିଳ କରି,
ଧୀରେ ଧୀରେ ଖୁବ୍ ଧୀରେ ଧୀରେ ।
ଆଜି ଏହି ଶେଷ ଦିନାନ୍ତରେ
ଅଶ୍ରୁ ହୋଇ ଝରି ପଡ଼େ
ପାହାଡ଼ରୁ ପାହାଡ଼ ତଳକୁ
ପାର୍ଥିବ ପ୍ରପାତ ।

ସୂର୍ଯ୍ୟକୁ ଗ୍ରାସ କରେ
ମେଘ,
ଛାଇ-ଆଲୁଅର ଖେଳ
ସରିଯାଏ ସବୁ ଦିନ ଲାଗି ।
ଛାଇମାନେ ବାଦୁଡ଼ି ପରି
ଝୁଲୁଛନ୍ତି ବାଁଉଶ ବୁଦାରେ,
ଭୂଇଁରେ ସୂର୍ଯ୍ୟ ଆଉ
ଚିତା ଆଙ୍କେ ନାହିଁ ସବୁଜ ପତ୍ରର ।
ଏ ବଡ ବିଚିତ୍ର ବ୍ୟାଧି,
ପୃଥିବୀର ବଡ ଦୁଃସମୟ,
ପୃଥିବୀକୁ ଘାରି ଅଛି ଜରା,
କ୍ରମଶଃ ସରିଯାଏ
ଏହି ବସୁନ୍ଧରା,
କ୍ଷୀଣ ହୋଇ ଆସେ
ମ୍ଳାନ ଖରା
ଅଳ୍ପ ଅଳ୍ପ କରି ।

କିଛି ହେଲେ ବାରି
ହୁଏ ନାହିଁ,
ଅକ୍ଷାଂଶ ଦ୍ରାଘିମା ସବୁ
ଏକାକାର,
ସ୍ତବ୍ଧ-ଗତି ପୃଥିବୀ ଆଜିକି ।
ବଡ ନିଃସ୍ୱ ପୃଥିବୀର
ଅନାବୃତ ଛାତି,
ଶୁଖି ଯାଏ ସବୁ ସବୁଜିମା ।
ପ୍ରବୀଣ ଗଛର ଦେହ
ଛାଁଏ ଛାଁଏ ଶୁଖି ଶୁଖି ଯାଏ
ନିଷ୍ଫଳ କ୍ରୋଧରେ ।

ଅବିଚ୍ଛିନ୍ନ ଶୀତ ଋତୁ
ମାଡ଼ି ଆସେ ପୃଥିବୀ ଆଡ଼କୁ ।
ପୃଥିବୀ ଶୋଇ ପଡ଼େ
ପାର୍ଥିବ ନିଦରେ,
ଯେଉଁ ନିଦ ଆଉ
ଭାଙ୍ଗେ ନାହିଁ ।

ସବୁ ନଈ ଶୁଖି ଯାଏ ଦିନେ,
ଆକାଶରେ ଭାସୁଥାଏ
ଢହ୍ମର କରୋଟ,
ଦୂରାଗତ ଚଢେଇଙ୍କ ରବ
ଆଉ ଶୁଭିବନି;
ସେମାନେ ଉଡିଯିବେ
ଅନ୍ୟ ଏକ ଗ୍ରହକୁ କେବଳ ।

■■■

# ଫେରୁଛି ନିଜ ପାଖକୁ

ମୁଁ ଆହତ ହୋଇଛି ଏଥର
ଗୁପ୍ତ ଘାତକର ଛୁରିକାରେ ନୁହେଁ,
ଅଥବା ମୋତେ ବିଦ୍ଧ କରି ନାହିଁ
କୌଣସି ବନ୍ଧୁକର ଗୁଳି ।
ମୁଁ ଆହତ ହୋଇଛି ତୁମ
ଆଖିର ଘୃଣାରେ ଏବଂ
କଣ୍ଠର ବିଦ୍ରୂପରେ କେବଳ ।
ମୁଁ କଣ ହେଲି, କଣ ନ ହେଲି,
ଅଥବା କଣ ହୋଇ ପାରିଥାନ୍ତି,
ସେ ହିସାବରେ ମୋର ଆଜି
ଦରକାର ନାହିଁ,
ସେ କଥା ବାଦ ଦିଅ
ପ୍ରୟୋଜନର ତାଲିକାରୁ ତୁମର ।
        ମୁଁ ଚାହେଁ ନାହିଁ
        ଆଖିରୁ ତୁମର ଝରି ପଡୁ ପ୍ରେମ,
        ଓଠ ଫୁଲି ଉଠୁ ମୋହିନୀ ହସରେ
        ଗୋଲ ହୋଇ ।
        ମୁଁ ଚାହେଁ ବଞ୍ଚିତ ହେବାକୁ
        ତୁମ କରୁଣାରୁ ସବୁ ଦିନ ପାଇଁ ।
ମୁଁ ଦେଖିନି' ପୃଥିବୀର
ସବୁ ଅନ୍ଧ-ଗଳି,
ବୁଲା ମୋର ସରି ନାହିଁ
ଆଜି ବି ।

ବାଟ ଚାଲୁ ଚାଲୁ ମୁଁ
ଝୁଣ୍ଟିଛି ସହସ୍ର ଥର,
ରକ୍ତ ମୋର ଏବେ ବି
ଝରୁଛି ।
ପବନର ଗୋପନ ଶୁଶ୍ରୁଷା
ସୁସ୍ଥ ମୋତେ କରିଦିଏ
ନେପଥ୍ୟରୁ ଆସି ।

ମୁଁ ଫେରୁଛି ନିଜ ପାଖକୁ,
ଯଦିଓ ମୋର ଘର ନାହିଁ
ନିର୍ଦ୍ଦିଷ୍ଟ ଭାବରେ ।
ମୁଁ ଫେରୁଛି ରାସ୍ତା ଖୋଜି ଖୋଜି
ଯଦିଓ ତୀର-ଚିହ୍ନ ନାହିଁ
କୌଣସି ବାଟର,
ଇଙ୍ଗିତ ସୁଦ୍ଧା ନାହିଁ
ମୋଡ଼ ବା ଛକର କୌଣସି ଠାରେ
ଗନ୍ତବ୍ୟକୁ ଯିବାକୁ ।
ମୁଁ ଫେରୁଛି ନିଜ ପାଖକୁ
ଏଥର,
ଶୀତ ଋତୁ ଝୁଲୁଅଛି
ଝରକାରେ ସ୍ଥିର-ଚିତ୍ର ପରି ।
ଏ ନିଶ୍ଚେ ମୋ'ରି ଘର
ଦୁଆରରେ ପର୍ଦ୍ଦା ନାହିଁ କିଛି,
ଟେବୁଲରେ ବିଛାଡ଼ି ପଡିଛି
ତୀବ୍ର ବେଦନା ପରି
କିଛି ଧୂସର ଫୁଲ,
କିଛି ପାଣ୍ଡୁଲିପି କବିତାର,

ଆଉ ଏଣେ ତେଣେ କିଛି
ଡଟ-ପେନ ସେମାନଙ୍କୁ
ରଖିଛି ଘୋଡ଼ାଇ ।
ମୁଁ ଫେରୁଛି ମୋର
ସତ୍ତାର ଗଭୀରକୁ,
ମୁଁ ଫେରୁଛି ମୋର କବିତା
ଭିତରକୁ ଏଥର,
ନିଜକୁ ଆବିଷ୍କାର କରିବି ବୋଲି ।

■■■

# ସବୁଜ ଦ୍ୱୀପରେ ମୁଁ

ମୋତେ ଟିକେ ଏକୁଟିଆ
ରହିବାକୁ ଦିଅ,
ନିଃସଙ୍ଗ ନକ୍ଷତ୍ର ଭଳି
ଜଳିବାକୁ ଦିଅ,
ଆକାଶର ନିଭୃତ କୋଣରେ ।
ମଣିଷର ଭିଡ ମୋତେ
ଭଲ ଲାଗେ ନାହ,
ମୁଁ ସହି ପାରେନା' ମୋଟେ
ମାଲ-ମାଲ କକୁର-ବିଲେଇ ।
ମୋତେ ଦେଇ ନାହିଁ
ନିର୍ବାସନ ଜନ-ଅରଣ୍ୟରୁ
କେହି ହେଲେ ।
ମଣିଷ ଦେହର ଝାଳ,
ଝାଳରେ ଓଦା ସାର୍ଟ, ସ୍ୱେଦାକ୍ତ ରୁମାଲ,
ସୁଦୀର୍ଘ ପଟୁଆର, ରହି ରହି
ଗର୍ଜିତ ସ୍ଲୋଗାନ,
ମୋତେ ଭଲ ଲାଗେ ନାହିଁ ।
ମୁଁ ଜାଣି ଜାଣି ଏସବୁରୁ
ରହିଛି ଦୂରେଇ ।
ମୁଁ ଯଦି ହୁଅନ୍ତି ଏକ
ସବୁଜ ଦ୍ୱୀପର ମାଲିକ,
ନଡ଼ିଆ ଗଛର ଛାଇ,
ଫୁସ ଫାସ୍ ଢେଉର ଆଳାପ,

ଉହ୍ନ ଆସିବ ଉଇଁ ଭେଦି
ସ୍ନିଗ୍ଧ ସୁନୀଳ ଜଳରାଶି,
ମୋତେ ସଙ୍ଗ ଦେବ ବୋଲି
ନିରୋଳାରେ ଆସି,
ଦ୍ୱୀପର ଅନାବୃତ ଛାତିରେ
ବାଲିର ପ୍ରଚ୍ଛଦ,
ଏଠି ସନ୍ଧ୍ୟାର ମୂର୍ତ୍ତି ଗଢିବାକୁ
ଭାରି ମନ ହୁଏ ।

ସେଦିନ ବର୍ଷା ହେଲା
ତିନ୍ତିଗଲେ ସାରସ ଦମ୍ପତି,
ସେମାନଙ୍କ ନାହିଁ ମୋଟେ
ଛତା ବା ବର୍ଷାତି ।
ମୁଁ ବି ବେବାକ ତିନ୍ତିଲି, ଆଉ
ତିନ୍ତିଲେ ଅଜସ୍ର ଶାମୁକା, କିନ୍ତୁ
ଆହା ବୋଲି କେହି କହିଲେନି ।

ଏଠି ନାହିଁ ଗୁଳିର ଶବ୍ଦ,
ଧର୍ଷଣର ତୀବ୍ର ଆର୍ତ୍ତନାଦ,
ଚିହ୍ନ ବର୍ଣ୍ଣ ନାହିଁ କିଛି
ମନ୍ଦିର ଅଥବା ମସଜିଦର ।
ଗୀର୍ଜାର ଘଣ୍ଟା ଧ୍ୱନି
ଏଠି ଶୁଭେ ନାହିଁ ।
କିଏ କହେ ମୁଁ ଲୁଚିଛି
ସୁଦୂର ଏ ସବୁଜ ଦ୍ୱୀପରେ ?
ଏ ସବୁ ମିଛ କଥା,
କେବଳ ଗୁଜବ,
ଗୁଜବରେ କାନ ଦିଅ ନାହିଁ ।

ଏଠି କ୍ରିଂ-କ୍ରିଂ ଫୋନ ବାଜେ ନାହିଁ,
ଚାରିଆଡ ଶୂନଶାନ୍,

ପ୍ରଶାନ୍ତି ବିଛାଡ଼ି ପଡ଼ିଛି, ଆଉ
ପକ୍ଷୀରାଜ ଘୋଡ଼ା ଏକ
ମୁହଁ ମାଡ଼ି ଚରୁଅଛି
ସବୁଜ ଘାସରେ,
ତା ଦେହରୁ ଜ୍ୟୋତ୍ସ୍ନାଧାରା
ନିଗିଡ଼ି ପଡୁଛି, ଏବଂ
ତାର ହ୍ରେଷା ଧ୍ୱନି ରହି ରହି
ମଥିତ କରୁଛି ଚରାଚର ।

■■■

# ଅନ୍ଧଗଳିର କ୍ଷଣ

ଅନ୍ଧଗଳି କିଛି
ଜାଣେ ନାହିଁ,
ଅନ୍ଧଗଳି କିଛି
ଦେଖେ ନାହିଁ,
ଅନ୍ଧଗଳି କିଛି ବୁଝେ ନାହିଁ ।
ସେ ଜାଣିନି କି କଥା
ଲେଖା ଅଛି
ପରସ୍ତ ପରସ୍ତ ଆଦିମ ଧୂଳିରେ,
କିମ୍ବା ପଲସ୍ତରା ଖସିଥିବା
କାନ୍ଥମାନଙ୍କରେ ।

କିଛି ଧୂସର ପ୍ରେମ,
କିଛି ପ୍ରତାରଣା, କିଏ କଥା
ଦେଇ ପୁଣି ରଖିଲାନି କଥା,
ପ୍ରତ୍ୟାଶା ଓ ଦୀର୍ଘଶ୍ୱାସ
ସବୁ ଏକାକାର ଏଠି,
ପଡ଼ିଛନ୍ତି ଜଞ୍ଜାଳର ସ୍ତୂପ ହୋଇ
ଅମୁହାଁ ଏ ଗଳିର
ଅନ୍ଧାରୁଆ କୋଣମାନଙ୍କରେ ।

ଅଳୀକ ନଦୀର ସ୍ୱପ୍ନ
ସୁଦୂରରୁ ଭାସି ଆସୁଅଛି,
ଶତାବ୍ଦୀ ଶେଷର ପ୍ରାନ୍ତଭୂମିରୁ ।
ଉଚ୍ଛଳ ତରଙ୍ଗ ଧ୍ୱନି ଗଳି
କଣ ଶୁଣି ପାରୁ ନାହିଁ

ସେ ନିଶ୍ଚେ ଧୋଇ ଦେବ
ତା ଛାତିର କ୍ଷତ ସବୁ,
ସବୁ ବିଡ଼ମ୍ବନା, ଭାସିଯିବ ଜଞ୍ଜାଳର ସ୍ତୂପ
ନଈର ସୁଅରେ ।

ସେ ରାତିରେ ଫୁଟିଥିଲା
କ୍ଲାନ୍ତ ରଜନୀଗନ୍ଧା
କାହାରି ଟବ୍‌ରେ ।
କାହା ଛାତ ଗଳି
ଜାଣେ ନାହିଁ
କିନ୍ତୁ ସେ ଛାତର ବାଡ଼
ଭାଙ୍ଗି ପଡିଥିଲା ସେ ରାତିର
ହେମନ୍ତ ଝଡ଼ରେ ।

ବାରବୁଲା ଷଣ୍ଢ ଏକ
ଠିଆ ଅଛି ଗଳକୁ ଓଗାଳି,
ସେ ରହି ରହି ଆନ୍ଦୋଳିତ
କରୁଛି ତାର ମାରଣା ଶିଙ୍ଗକୁ,
ସେ ନଈକୁ ପଶିବାକୁ ଦେବ ନାହିଁ
ଗଳିରେ କଦାପି ।



# ମୃତ୍ୟୁର ମୁହଁ

ଦିନେ ଦିନେ ରାତି
ବେଶି ହେଲେ,
ମୁଁ ଭାବେ ମୃତ୍ୟୁର କଥା,
ଯିଏ ଆସି ଠିଆ ହୁଏ
ମୁଣ୍ଡ ପାଖ ଝର୍କା ପଛରେ ।
ମୁଁ ଆଜି ରିକ୍ତ ବନ୍ତ
ପାରି ହୁଏ ସବୁ ନୀରବତା,
ନିସ୍ତବ୍ଧ ଅନ୍ଧକାର, ଘରର
ଅଭ୍ୟସ୍ତ ଭୂଗୋଳ,
ପାଦ ମାପି ମାପି ।
ଚିହ୍ନି ମୁଁ ପାରେ ନା ଆଜି
ନିଜ ଖଟ, ନିଜର କୋଠରୀ,
ମୋ ଶଯ୍ୟାର ପ୍ରଚ୍ଛଦରେ
ବିବସ୍ତ୍ର ମୋ ଦେହ
ପଡ଼ି ରହେ ।

ମୁଁ ଦେଖୁଛି ମୃତ୍ୟୁର ମୁହଁ,
ଏବଂ ତହିଁରୁ ଝରି ପଡୁଥିବା
ସୁଦୀର୍ଘ ପ୍ରତୀକ୍ଷା ।
ସମବେତ ଦୀର୍ଘଶ୍ୱାସ ମୁଁ ଛାଡ଼ି
ଆସିଛି ନଦୀର ଅପର ପାରରେ ।
ହୃଦୟର ଦରପୋଡ଼ା କ୍ଷତସବୁ
ମୁଁ ଲୁଚାଇଛି ମୃତ୍ୟୁ ଠାରୁ
ସନ୍ତର୍ପଣରେ, ମହାର୍ଘ୍ୟ ଶାଲ

ଘୋଡ଼ି ହୋଇ ।
ଦର୍ପଣରେ ଏ କାହାର ଛାଇ ?
ମୁଁ ଚମକି ପଡ଼ିଛି ।
ଶବ୍ଦର ଶୃଙ୍ଖଳରେ ଯେଉଁମାନେ
ଧରା ଦେଲେ ନାହିଁ,
ଯେଉଁମାନେ ଓଦା ହେଲେ
ହଠାତ୍ ବର୍ଷାରେ,
ସେମାନେ ତାଙ୍କ ଲୁଗା
ପାରିଲେ ଶୁଖାଇ,
ସ୍ମୃତି ଓ ସ୍ୱପ୍ନର ଖରାରେ ?
ମୃତ୍ୟୁ କିନ୍ତୁ ତାଙ୍କୁ ଛାଡ଼ିବନି
ସେ ନିଶ୍ଚେ ଜଗି ଥିବ
ତାଙ୍କ ଲୁଗା ଶୁଖୁ ବା ନ ଶୁଖୁ ।

ମୃତ୍ୟୁ ଶୋଇ ରହେ ତାର
ଅନାବନା ଘାସର ଶେଯରେ,
ସେ ଉଠି ଠିଆ ହୁଏ
ଶାଳପ୍ରାଂଶୁ ବାହୁକୁ ବିସ୍ତାରି,
ହେମନ୍ତର ଝରା ପତରରେ
ଶୁଭେ ତାର ପଦଧ୍ୱନି ।
କ୍ରମଶଃ ସେ ଆସୁଛି ଆଗେଇ
ଖୁବ ଧୀରେ, କିନ୍ତୁ ଏକ
ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ।

■■■

# ଧାନକଟା ଶେଷ ହେଲା

ଧାନକଟା ସରିଲାଣି,
ଏଠି ସେଠି ପଡିରହେ
କିଛି ସାପକାତି, ଅଣ୍ଡାର ଖୋଳପା ।
ପାଳଭୂତ ବଡ଼ ଅର୍ଥହୀନ୍,
ସେ ହିଡ଼ ପାଖେ ଠିଆ ରହେ ଚୁପ୍ ଚାପ୍,
ଦିଗନ୍ତକୁ ମାପୁଥାଏ ନିସ୍ପୃହ ଆଖିରେ,
ତାର କିଛି କାମ ନାହିଁ ଆଜି ।

କୁହୁଡ଼ି ଠିଆ ହୁଏ
ଗଛକୁ ଆଉଜି,
ସେ କାହାର ପ୍ରତୀକ୍ଷାରେ ଅଛି ?
କାକରର ଟୋପା ସବୁ
ଝରିବେ ରାତିରେ ଗୋଟି ଗୋଟି ହୋଇ,
ଓଦା ହେବେ କୁଟା-କାଠି,
ଖଣ୍ଡ ଖଣ୍ଡ ନଡ଼ା ।
ପ୍ରକୃତିର ସମଗ୍ର କୁହୁକ
ଏକତ୍ରିତ ଏହି ପଡ଼ିଆରେ,
କପୋତର ବିଷଣ୍ଣ କୂଜନ
ସ୍ତବ୍ଧ ଆଜି,
ଧାନକଟା ସରିଛି ଏଥର ।

ପବନରେ ବାଜୁଅଛି
ବିଷାଦର ସ୍ୱର,
ହେମନ୍ତର ବିଧୂର ରାଗିଣୀ ।

ମୂଷିକର ଧୂସର ଲୋମରେ
ଜୋଛନାର ଗୁଣ୍ଡ ଗୁଣ୍ଡ
ରେଣୁ ଲାଗିଅଛି ।
ଅତିକାୟ ଜନ୍ତୁ ଏକ
ପ୍ରଦକ୍ଷିଣ କରୁଅଛି ଆକାଶକୁ
ଅଳସ ଭଙ୍ଗୀରେ ।
ନଣ୍ଡା ଧାନ ଖେତ ଆଜି,
ବଡ ଫାଙ୍କା ବଡ ଶୂନ୍‌ଶାନ୍,
ଦୂରରେ ଦିଗନ୍ତ ଦିଶେ
ଖୁବ ସ୍ୱଷ୍ଟ, ଏକାନ୍ତ ମାୟାବୀ,
ପାଖରେ ଶ୍ମଶାନ ।

କ୍ରମେ ଉଡ଼ିଆସେ ଏକ
ପେଚକ ଦମ୍ପତି ଶୀତର
ପ୍ରସ୍ତାବ ନେଇ ।
ସେ ଆସିଛି ଜୋଛନାରେ
ଗାଧୋଇ ପାଧୋଇ,
ମାପୁ ଅଛି ପୃଥିବୀକୁ
ନିଗୂଢ ଡେଣାରେ ।
ଧାନକଟା ସରିଲାଣି,
ସ୍ତୂପାକାର ସ୍ୱର୍ଣ୍ଣାଭ ଧାନରେ
ଭରିଅଛି ଖଳା,
ଭାସିଆସେ ଶିଶୁଙ୍କ କାକଳୀ,
ପଡୁଛି ବେଙ୍ଗଳା ।

■■■

# ଆଏ୍ନାରେ କାଉ

ମନର ଆଏ୍ନାରେ କାଉ
ସକାଳୁ ବସିଛି,
ତଡ଼ିଲେବି ଯାଉ ନାହିଁ
କେବଳ ଡାକୁଛି ।
ତୁମେ ଆସିବ ବୋଲି
ମୁଁ ଜାଣିଥିଲି,
ଦିନ ଥାଉ ଥାଉ ।
ଆଖିର ଚାରିପଟେ ଅନିଦ୍ରାର ଦାଟ
ବାଳ ଯାଇଛି ପାଚି
ଯଥେଷ୍ଟ ଯଥେଷ୍ଟ,
ତୁମର ସେ ଆଗ ହସ ନାହିଁ ।
ଠିଆ ହେଲ କାହିଁକି,
ଚଟେଇଟା ପାରି ଦେଇ ବସ,
କାନ୍ଥକୁ ଆଉଜି, ଆରାମ କରି,
ସ୍ୱଛନ୍ଦ ଭାବରେ ।
ଘରେ କେହି ନାହିଁ ଆଜି,
ମୋର ବି ଯିବାର ନାହିଁ କେଉଁଠିକି ।
ଭାଇର ସଂସାରରେ
ବଡ ପାରି, ଲୁଗା କାଟି,
ଆଉ କେତେକାଳ ବିତାଇବ,
ସିଲାଇ କଳର ଘର୍ଘର ଧ୍ୱନି
ଜୀବନ ସଙ୍ଗୀତ ହେବ କଣ ?

ପାପ ନାହିଁ ଭଲ ପାଇବାରେ,
ତୁମେ କିଛି ଭୁଲ କରି ନାହଁ
ଯଦି କେବେ ଭଲ ପାଇ ଥାଅ
କାହାରିକୁ ।
ଖସି ପଡୁ ଛାତିରୁ ପଣତ
କିଛି ହେଲେ ଯାଏ ଆସେ ନାହିଁ,
ସାବଲୀଳ ଭଙ୍ଗୀରେ ବସ
ଗୋଡ଼କୁ ପ୍ରସାରିତ କରି,
ମନେ ପଡ଼େ କଲେଜରେ
ଗୁପଚୁପ୍ ଖିଆ
ଠେଲାଗାଡ଼ିବାଲା ଠାରୁ
ପରମ ତୃପ୍ତିରେ ?
ସେତେବେଳେ କିନ୍ତୁ ତୁମ
ଘରକୁ ଫେରିବା କଥା
ମନେ ପଡ଼ି ନାହିଁ, ସଅଳ ସଅଳ ?

ମୁଁ ଆଜି ଭୀଷଣ ରିକ୍ତ,
ଅବସାଦ ଗାସିଅଛି ମୋତେ,
ଏକା ଏକା ବାଟ ଚାଲିବାକ
ମନ ହୁଏ ନାହିଁ ।
ସିଗାରେଟ ପୋଡ଼ି ପୋଡ଼ି
କ୍ଷୟ ହୁଏ ଆଙ୍ଗୁଠି ଫାଙ୍କରେ
ମୁଁ ମଧ୍ୟ ସରିଯାଏ ଜ୍ୱଳନ୍ତା
ସିଗାରେଟ ପରି ତିଳ ତିଳ କରି ।
କୁଣ୍ଠା ଅଛି ମୋ ସାଙ୍ଗେ
ବାଟ ଚାଲିବାକୁ ? ତା'ହେଲେ
ଆଗେଇ ଆସ, ଧର ମୋର ହାତ ।

ତୁମକୁ ଛୁଇଁ ଛୁଇଁ ବାଟ ଚାଲିବାକୁ
ଖୁବ ମନ ହୁଏ । ଇଚ୍ଛା ହୁଏ
ଛୁଁଇବାକୁ ତୁମର ହୃଦୟ ।
ରାସ୍ତାରେ ନାହିଁ କେହି
ଟ୍ରାଫିକ ପୋଲିସ ।
ବାଟ ବଡ଼ ଶୂନ୍‌ଶାନ୍, ଜନହୀନ ଆଜି ।
ଶୂନ୍‌ଶାନ୍ ନୁହେଁ କିନ୍ତୁ
ଜହ୍ନର ଗୁହାଳ,
ଦୁଗ୍ଧବତୀ ଗାଭୀମାନେ
ଢାଳୁଛନ୍ତି କ୍ଷୀର, ଯାହା ପୃଥିବୀକୁ
ଝରୁଅଛି ଜୋଛନା ଧାରାରେ ।

■■■

# ଜେଜେମା

ଜେଜେମା ପକାଇଛି ବଡ଼ି,
ଶୀତର ସକାଳ,
ଚାରିଆଡ଼େ ସ୍ୱର୍ଣ୍ଣାଭ ଖରା ।
ଜେଜେମାର ଫୁଙ୍ଗୁଳା ପିଠିରେ
ଲାଉ ହୋଇ ଝୁଲୁଅଛି ଖରା,
ଅଝଟ ପିଲାପରି କଥା ମାନୁ ନାହିଁ ।
ଜେଜେମାର ହାତ ଥକୁ ନାହିଁ
ସେ ପକାଉଛି ବଡି କ୍ରମାଗତ ।
ଜେଜେମାର ମୁହଁ ଯାକ
ବୁଢୀଆଣୀ ଜାଲ ପରି
ବୟସର ଜଟିଳ ଜ୍ୟାମିତି ।
ଆଖିରେ ପରଳ,
ସଂସାରର ସମସ୍ତ ଗରଳ
ସେ କରିଛି ପାନ,
ଦ୍ୱିଧାହୀନ ପ୍ରସନ୍ନ ଚିତ୍ତରେ ।
ଦୂରରୁ ଭାସି ଆସେ
ପିଲାଙ୍କର ରଡ଼ି,
ଜେଜେମାକୁ କିଛି ଶୁଭୁ ନାହିଁ
ତାହାର ବହୁତ କାମ,
ସେ ପକାଉଛି ବଡି ।

■■■

# ଶେଷ ସୂର୍ଯ୍ୟ

ଶତାବ୍ଦୀର ଶେଷ ସୂର୍ଯ୍ୟ
ଝାସ ଦେଲା ଗୋଧୂଳି ବେଳାରେ
ଦେଖିବାକୁ କେହି ନାହିଁ,
କେବଳ ଶୀତ ଋତୁ
ମୂକସାକ୍ଷୀ ପରି
ବସିଥିଲା ସମୁଦ୍ର ବାଲିରେ
ଗୁଡ଼କଙ୍କ, କଙ୍କଡ଼ା ମେଳରେ ।

ଅତଳ ଜଳର ଆହ୍ୱାନ
ଶୁଣିଥିଲା ସୂର୍ଯ୍ୟ କିନ୍ତୁ
ଖୁବ ସ୍ପଷ୍ଟ ଭାବେ,
ତେଣୁ ତାର ତର ସହିଲାନି;
କୁଦି ସେ ପଡ଼ିଲା
ଶେଷ ଥର ପାଇଁ
ଦିଗ୍‌ବଳୟ ପାଖ ସମୁଦ୍ରରେ ।

ସେତେବେଳେ ପବନରେ
ବିଶ୍ୱାସର ଚିହ୍ନ-ବର୍ଣ୍ଣ ନାହିଁ,
ଆଗାମୀ ଶତାବ୍ଦୀ ପାଖେ
ଏ ସୂର୍ଯ୍ୟର କିଛି କଣ
ପ୍ରତ୍ୟାଶା ବି ନାହିଁ ?
ସେ ଆଉ ଫେରିବ କାହିଁକି ?
ଶେଷ ସୂର୍ଯ୍ୟ ମନେ ମନେ ଭାବେ ।

■■■

# ଶାନ୍ତି ସନ୍ଧାନରେ କବି

ମୁଁ ଆଜି କେମିତି ଲେଖେ,
ଲେଖେ ବା କାହିଁକି, କାହା ପାଇଁ,
ଏ ସବୁ ପ୍ରଶ୍ନର ମାନେ
କୁହୁଡ଼ିରେ ଲୁଚି ରହେ ନାହିଁ ।
ଏ ସବୁ ଅତ୍ୟନ୍ତ ସ୍ପଷ୍ଟ
ଦିବାଲୋକ ପରି, କେଉଁଠି ହେଲେ
ଅନ୍ଧକାର ନାହିଁ ।
ମୋ ଆଗରେ ରୂପ ଧରି
ଠିଆ ହୁଏ ଆସି,
କବିତାର ପ୍ରତ୍ୟେକଟି ଧାଡ଼ି
ବାହୁଡ଼ି ବାହୁଡ଼ି ।

ପକ୍ଷୀର ନୀଡ଼ ପରି ଆଖି ଯାର
ସେ କଣ ଶାନ୍ତି ଦେଇଥିଲା
କବିକୁ ଏଥର ?
ଶାନ୍ତି ମିଳେ ନାହିଁ ଖୋଜିଲେ ବି
ତନ୍ନ ତନ୍ନ କରି ।
ଦୁର୍ଲଭ ଖଣିଜ ପରି
ମାଟି ତଳେ ଶାନ୍ତି ଲୁଚି ରହେ ।
ଏ ଖଣିଜ ଖୋଜିଲେ ବି
ସହଜେ ମିଳେନା,
ଏ ଖଣିଜ ସୁନା ଠାରୁ
ଆହୁରି ଦାମିକା ।

ମାଟିର ଅନେକ ତଳେ
ଶାନ୍ତି ଶୋଇ ରହେ ।
ଦୁଆରେ ଶୀତ ଋତୁ
କ୍ରମାଗତ କରାଘାତ କରେ,
ସୂର୍ଯ୍ୟାସ୍ତ ଅଟକି ରହେ
ପାହାଡ଼ ଚୂଡାରେ କିଛି ବେଳ
ପାଇଁ ।
ତାପରେ ସୂର୍ଯ୍ୟ ସର୍କସ ଖେଳାଳି ପରି
ଜୀବନକୁ ପାଣି ଛଡ଼େଇ
କୁଦି ପଡ଼େ ପଶ୍ଚିମର ମାଳଭୂମି ତଳକୁ ।

ଶୀତ ଋତୁ ଆସି ବସା ବାନ୍ଧେ
ଛାତିର ପଞ୍ଜରା ହାଡ଼ରେ ।
ଏହା ପରେ ଅଶେଷ ଯନ୍ତ୍ରଣା,
ଆଣ୍ଠୁ-ଗଣ୍ଠି ବାତ ବି ଯନ୍ତ୍ରଣା,
ସଳଖ୍ ଚାଲିହୁଏ ନାହିଁ,
କଷ୍ଟରେ ବଙ୍କା ହୋଇଯାଏ
ହାତ-ଗୋଡ଼ ଦେହର ଦ୍ରାଘିମା ।
ବିଚ୍ଛେଦରେ ଯନ୍ତ୍ରଣା ଅଛି,
ହୃଦୟରୁ ଯେତେବେଳେ
ଘୁଞ୍ଚିଯାଏ ଅପର ହୃଦୟ ।
ବିଦ୍ଧ କରେ ଯନ୍ତ୍ରଣାର ତୀର,
ହୃଦୟକୁ ଫାଡ଼ି ଦିଏ
ଦୁଇ ଫାଳ କରି ।
ନିଶ୍ୱାସ ରୁନ୍ଧି ହୋଇଯାଏ
ମରି ଯାଏ ସମସ୍ତ ବିଶ୍ୱାସ ।

ପର୍ଯ୍ୟଟକ କେହି ,ଜଣେ
କବିଙ୍କୁ କହିଲେ, ଶାନ୍ତି ଅଛି ସମୁଦ୍ର ବେଳାରେ,
ଗଡୁଥିବା ଗୁଡ଼କଙ୍କ ଦେହେ
ଶାନ୍ତି 'ବୋଲା ଅଛି,
ବାଲିବନ୍ତ ଶାନ୍ତିର ନିଳୟ ।
କିନ୍ତୁ ସମୁଦ୍ରଟା ଭୀଷଣ ପ୍ରଗଳଭ,
କଥା ତାର କେଭେ ସରେ ନାହିଁ,
ଢେଉମାନେ ସ୍କୁଲ-ବାହୁଡ଼ା ଟୋକିଙ୍କ ପରି
ଗପରେ ମାତିଥାନ୍ତି ପରସ୍ପର,
ଅଥବା ସେମାନେ ସର୍କସର କରୁଣ ଜୋକର
ଗଡୁଛନ୍ତି ଖେଳ ସରିଗଲେ ।
ଜୋଛନାରେ ଭରିଅଛି ହୃଦୟର
ସମସ୍ତ ଗବାକ୍ଷ,
ବେଳାଭୂମି ଉଛୁଳି ପଡୁଛି ଜୋଛନାରେ ।
ଆକାଶର ଏ ସବୁ ଆଙ୍ଗିକ
କାହା ପାଇଁ ? କବି ପାଇଁ ନୁହେଁ ?
ଏଥର ସେ ଶାନ୍ତିରେ ଶୋଇବ ।

■■■

# ଧୂସର ମଣିଷ

ଗୋଟିଏ ମୁହୂର୍ତ୍ତରେ ସବୁ କିଛି
ବଦଳିଯାଏ,
ହୋଇଯାଏ ଓଲଟ-ପାଲଟ,
ପାର୍ଥକ୍ୟ ରହେ ନାହିଁ
ଡାହାଣ-ବାଁ'ର,
ମଣିଷମାନେ ପାଲଟନ୍ତି ଜଡ,
ଅସ୍ପଷ୍ଟ ଏବଂ ଈଷତ୍ ଧୂଁଆଳିଆ,
ଦଗ୍ଧ ଯୌବନରେ ସେମାନେ
ଆଶ୍ୱାସନା ଖୋଜନ୍ତି ପରସ୍ପରର ।

ଏହି ସବୁ ଝାପ୍‌ସା ମଣିଷମାନେ
ଅଳୀକ ନୁଁହନ୍ତି ମୋଟେ,
ମରୁଭୂମିର ଓଟ ପରି
ଉତ୍ସୁକ ଗ୍ରୀବା ଲମ୍ବେଇ
ସେମାନେ ମାପନ୍ତି ପରସ୍ପରକୁ,
କିମ୍ବା କେତେ ଦଗ୍ଧ ବୋଲି ଦେଖନ୍ତି ।

ଏହି ସବୁ ଧୂସର ମଣିଷଙ୍କ ଜୀବନରେ
ଓହ୍ଲାଏ ଅବସନ୍ନ ଛାଇ,
ଏ ଛାଇ କାହାର ?
ମଣିଷ ମୂଳରୁ ଏକାକୀ
କେହି ନାହିଁ ପ୍ରସାରିତ
ହାତ ଧରିବାକୁ ।

ଜୀବନର ଅଭିଧାନ କ୍ରମଶଃ
ଜଟିଳ ଲାଗେ, ମାନେ ସବୁ
ଖୋଜି ମିଳେ ନାହିଁ ।
କିଏ ଆଗେ ପାରି ହେବ
ଦହନର ନଦୀ ?
ବେଦନା ଗ୍ରାସ କରେ କ୍ଷତ ଚିହ୍ନ ସବୁ,
ଭଙ୍ଗା ଚଶମା ପଡ଼ିଥାଏ
ଦର୍ପଣ ଆଗରେ
ଭୀଷଣ ଏକାକୀ ।

■■■

# ଅଲେଖା କବିତା

ଯେ କବିତା ଲେଖା ହୋଇନାହିଁ,
ସେ କବିତା ଆହୁରି ମହାନ୍,
ତାର ପ୍ରତିଟି ଧାଡ଼ି ବେଗବାନ
ଅଶ୍ୱ ପରି ସଦା ଧାବମାନ୍,
କେଭେ ଥକେ ନାହିଁ ।

ମୋ ଆଖିରେ ଯେତେବେଳେ
ସ୍ୱପ୍ନ ଆସି ବୋଳି ହୋଇଯାଏ,
କବିତାର ରକ୍ତାକ୍ତ ଭ୍ରୂଣ ଓହ୍ଲାଏ
ମୋ ସତ୍ତାର ଗଭୀରରେ ।
କେହି ଜଣେ ଛଦ୍ମବେଶୀ
ମୋ ଟେବୁଲରେ ରଖିଯାଏ ଆସି
କିଛି କବିତାର ଧାଡ଼ି
ଅବିନାଶୀ ଅକ୍ଷରରେ ଲେଖା ।
ଏ କବିତା ଅତି ସୂକ୍ଷ୍ମ
ଅତ୍ୟନ୍ତ ମାୟାବୀ,
ଏଥିରେ ଲୁଚାଥାଏ ଜୀବନର ଚାବି ।

ମୃତ୍ୟୁ ଏକ ସୁଦୂର ନକ୍ଷତ୍ର,
ଏହି ସବୁ ଅନାଗତ କବିତାରେ
ମୃତ୍ୟୁର ପଦଧ୍ୱନି ନାହିଁ ।
ଜୀବନର ରଙ୍ଗରେ ଜୁଡୁବୁଡୁ
କବିତାର ଧାଡ଼ି,
ସକାଳର କଅଁଳ କିରଣ
ପଡ଼ିଛି ବିଛାଡ଼ି ।

ଫୁଲର ଅଭୁଲା ମହକ
ପକ୍ଷୀଙ୍କ କାକଳୀ, ଆସୁଅଛି ଭାସି,
ଦୁଆର ଖୋଲି ଦିଅ,
କରାଘାତ କରେ ଭୋର
କବାଟରେ ଆସି ।
ଯେଉଁଠି ଆକାଶ ପଡ଼େ
ଅଜାଡି ପୃଥିବୀ ଛାତିରେ
ଦୀର୍ଘଶ୍ୱାସ ଶୋଇଥାଏ ମୁଁହ ମାଡ଼ି
ନଈ ଆର ପାରିରେ ।
ପ୍ରବଞ୍ଚନା, ଭୋଗ, ଏବଂ ନାନାବିଧ ଦୁର୍ମର ଶୋକ
ହୃଦୟକୁ ପାରେ ନାହିଁ ପୋଡ଼ି
ପୃଥିବୀର ସବୁ ଅପନ୍ତରା ଭରିଥାଏ
କୋମଳ ଘାସରେ ଯେଉଁଠି,
ପବନର ଲୁଚୁକାଳି ଖେଳ ଦେଖିବାକୁ,
କିମ୍ବା ଗଛର ଗୋପନ ଭାଷ୍ୟ
ଶୁଣିବାକୁ କେହି କଣ ନାହିଁ ସେଠି,
ସେହି ପୃଥିବୀରେ ?
ଅଲେଖା କବିତାରେ ସେ ପୃଥିବୀର
ମହାର୍ଘ୍ୟ ଠିକଣା ଲେଖା ଅଛି,
ହଁ, ଲେଖା ଅଛି ।



# ଅନ୍ଧାରରେ ଅଛି

ମୋର ଗୋଟାଏ ନିଜସ୍ୱ
ଅନ୍ଧାର ଅଛି,
ଖୁବ ଘନ, ଅତ୍ୟନ୍ତ ନିବିଡ଼ ଏବଂ ବିଶ୍ୱସ୍ତ ।
ହାତ ବଢ଼ାଇ ସ୍ପର୍ଶ କରି ହୁଏ
ତା ଶରୀର ।
ମୁଁ ବେଳେ ବେଳେ
ସେ ଅନ୍ଧାରରେ ନିମଜ୍ଜିତ ହୁଏ ।

ଆଜି ମୁଁ ବିଷାଦରେ ଅଛି,
କାହାରି ସଙ୍ଗରେ କଥା
କହିବାକୁ ଇଚ୍ଛା ହେଉ ନାହିଁ ।
ପୃଥିବୀର ଫ୍ରେମ୍‌ରେ କ୍ରମଶଃ
ରାତିର ଛବି ଫୁଟି ଉଠୁଛି ।
ଅନ୍ଧକାର ଓ ବିଷାଦ
ଦୁହେଁ ମୁହାଁ ମୁହିଁ ।
ଚାରିଆଡ଼େ ବିବର୍ଣ୍ଣ କୁହେଳି
ପାରମ୍ପର୍ଯ୍ୟହୀନ ।
ନିସ୍ତରଙ୍ଗ ହ୍ରଦ ପରି
ଅନ୍ଧାରରେ ମୁଁ ବୁଡ଼ି ଯାଉଛି ।

ମୁଁ ଆଜି ଅନ୍ଧାରରେ ଅଛି,
ପଙ୍ଖାର୍ ପବନରେ ମୋର
ଧଳା ବାଳ
ଫୁରଫୁର ହୋଇ ଉଡୁଛି,
ଆଉ ଉଡୁଛି କବିତାର ପୃଷ୍ଠା ସବୁ ଏଣେ ତେଣେ ।

ମୋ ଖଟ ଚାରିପାଖେ
ସୀମାହୀନ ଅନ୍ଧାର ।
ବାଁ —ଡାହାଣ, ତଳ ଏବଂ ଉପର
ସବୁଠି ମୁଠା ମୁଠା ଅନ୍ଧାର କେବଳ ।
ମୋ ଜୀବନରୁ ସମସ୍ତ କବିତା
ଆଜି ଅନ୍ତର୍ହିତ,
ସେମାନେ ସଂଶୋଧନ ପାଇଁ
ଅପେକ୍ଷା ସୁଦ୍ଧା କରୁ ନାହାନ୍ତି ।
ମୁଁ କ୍ରମେ ନିୟନ୍ତ୍ରଣ ହରାଉଛି
ନିଜ ଉପରୁ ।
ହାତ-ଗୋଡ଼ ବୋଲ ମାନୁ ନାହାନ୍ତି
ସଠିକ ଭାବରେ ।
ମୁଁ ଆଜି ବିଷାଦରେ ଅଛି,
ମୁଁ ଆଜି ଅନ୍ଧାରରେ ଅଛି ।



# ଏକାକୀତ୍ୱ ଏବଂ ମୁଁ

ଏକାକୀତ୍ୱ ମୋର ପ୍ରିୟତମ ଶବ୍ଦ,
ଏବଂ ସେ ମଧ୍ୟ ମୋତେ ଭଲପାଏ,
ଯେମିତି ଭଲ ପାଏ ସୂର୍ଯ୍ୟ ସମୁଦ୍ରକୁ କିମ୍ବା
ଜହ୍ନକୁ ନିଛାଟିଆ ବିସ୍ତୀର୍ଣ୍ଣ ନଈପଠା ।

ଶବ୍ଦ ସବୁ ଘୁଞ୍ଚି ଘୁଞ୍ଚି ଯାନ୍ତି ମରୀଚିକା ପରି,
ମିଳାନ୍ତି ଦୂର ଦିଗ୍‌ବଳୟରେ ।
ଆମେ ଦୁହେଁ ପାରି ହେବୁ
ଅଶକ୍ତ ଶବ୍ଦର ସେତୁ,
ଯାହା କୀଟଦଷ୍ଟ ଏବଂ ପ୍ରାଚୀନ ।
ଏ ସେତୁ ଯେ କୌଣସି ମୁହୂର୍ତ୍ତରେ
ଭାଙ୍ଗି ପଡ଼ି ପାରେ ।

ସମୟ ବଡ଼ ଅମୂଳକ,
କିୟଦଂଶରେ ଅର୍ଥହୀନ ମଧ୍ୟ ।
ଏକାକୀତ୍ୱର ପଦଧ୍ୱନି ଯେ ଶୁଣିଛି,
ସେ ଜାଣିଛି, କଣ ହୁଏ ସମୟ ସରିଲେ ।
କିଛି ହୁଏ ନାହିଁ,
**ସରିଯାଉ ପୃଥିବୀର ଯାବତ୍** ଗୋଧୂଳି,
ପବନର ପ୍ରତିଶ୍ରୁତି ଥାଉ ବା ନ ଥାଉ,
ମୁଁ ଜାଣେ ମୋ ପାଇଁ
ଅପେକ୍ଷା କରିବ ସିଏ
ନିରବଧି କାଳ ।

ଶବ୍ଦର ସେତୁ ଦେହଲୁଛି,
ଭାଙ୍ଗି ପଡ଼ିବାର ଈଷତ୍ ପୂର୍ବରୁ ତାକୁ
ପାରି ହୋଇ ଏକାକୀତ୍ୱ
ଆସିବ ମୋ ପାଖକୁ,
ମୁଁ ଶକ୍ତ ମୁଠାରେ ତାକୁ
ଜାବୁଡ଼ି ଧରିବି ।
ଆକାଶରୁ ହାମୁଡ଼େଇ ପଡ଼ି
ଅପରାହ୍ନ ଆମ ଦୁଁହିଙ୍କୁ ଦେଖୁଥିବ
ଅପଲକ ଆଖିରେ ।
ଦିଗନ୍ତର ସବୁ ପରିଚିତ ଚିହ୍ନ
ଆଜି ରକ୍ତାକ୍ତ କ୍ଷତ ପରି ଜଳୁଛି,
ଆମେ ଦୁଁହେ ଯିବା ସେଠାକୁ
ଚାଲି ଚାଲି, ହାତ ଧରି ଧରି,
ନିଃସଙ୍ଗତା ଆମକୁ ବାଟ କଢ଼ାଇ ନେବ ।

■■■

# ହଜିଗଲା ଲୋକ

ଏମିତି ବି ବେଳେ ବେଳେ ହୁଏ,
କେହି ଜଣେ ଟୁପ୍ କରି
ଖସି ପଡ଼େ ପୃଥିବୀ ପୃଷ୍ଠରୁ,
ସବୁ ଦିନ ପାଇଁ ।

ସେ କଣ ଗଲା ସନ୍ନ୍ୟାସରେ, ନା,
ଭୁଲିବାକୁ ପ୍ରଚ୍ଛନ୍ନ ଆଘାତ
ଦେଶାନ୍ତରୀ ହେଲା, ସ୍ତ୍ରୀ-ପୁତ୍ର, ପରିଜନ
ଛାଡ଼ି ଦେଇ, ଗୋପନରେ ଖସି
ଚାଲିଗଲା ଠିକଣା ନ ରଖି ?

ସେ ହୁଏତ ଯାଇଅଛି
ବଣକୁ ଏଥର,
ଯେଉଁଠି ଗଛମାନେ
କଥାରେ ମୁଖର, ପରସ୍ପର,
ଆନ୍ଦୋଳିତ ଶାଖା ଛନ୍ଦି ହୋଇ ।
ଗୋଡ଼ ତାର ବାନ୍ଧି ଦେଲା
ଜଟିଳ ଶିଆଳୀ, ଶିକୁଳୀ ପକାଇ ।

ବେଳେ ବେଳେ ଏମିତି ବି ହୁଏ,
ସେ ହୁଏତ ଶୁଣିଥିଲା ଡାକ,
ସ୍ୱପ୍ନ-ବିକାଳି ଫେରିବାଲା
ଡାକି ଡାକି ଯାଉଅଛି ରାସ୍ତାରେ ରାସ୍ତାରେ,
ଯାହା ନିୟତି ପରି ଅତ୍ୟନ୍ତ ଅମୋଘ,
ସେ ଡାକକୁ ଏଡାଇ ହୁଏନା !

ସେ ଡାକରେ କିଛି ଗୋଟେ ଥିଲା,
ସ୍ୱଚ୍ଛଳତା ଶାନ୍ତି ଦିଏ ନାହିଁ,
ସବୁକିଛି ଥାଇ ସୁଦ୍ଧା
ଅପ୍ରାପ୍ତିର କେଉଁ ଏକ
ସୁତୀବ୍ର ବେଦନା, କୋରି କୋରି
ଖାଇଯାଏ ହୃଦୟକୁ ନିର୍ମମ ଭାବରେ ।

ଯାହା ସେ ପାଇବ ନାହିଁ କେଭେ,
ସେ ଗୋଡାଇଛି ତାହାରି ପଛରେ ।
ଘର, ଗାଡ଼ି, କ୍ଲବ, ପାର୍ଟି
ସବୁ କିଛି ଦେଇ ପାରେ ନାହିଁ,
କିଛି ଗୋଟେ ରହିଯାଏ ବାକି,
ଯେତେବେଳେ ସେ ଥାଏ
ଏକାନ୍ତ ଏକାକୀ,
ଭାବନାରେ ବୁଡ଼ି ଯାଏ ସିଏ,
ଆଉ ନିଜକୁ ହଜାଇ ଦିଏ
ଚିହ୍ନ ନ ରଖି ।

■■■

# ବିରହର ଦିନ

ପାରି ହୋଇ ହୁଏ କାହିଁ
ବିରହର ମରୁ,
ତୁମ ମୁହଁ ଦୂର ମରୀଚିକା,
ମିଳାଏ ଦିଗନ୍ତରେ ଧରା ଦିଏ ନାହିଁ,
କେବଳ ଘୁଞ୍ଚି ଘୁଞ୍ଚି ଯାଏ,
ବିତେ ନାହିଁ ବିରହର ଦିନ ।

ପ୍ରେମ ଏକ ନିହତ ହରିଣୀ,
ଶବ ତାର ପଡି ରହେ
ଧୂସର ବାଲିରେ,
ପଚାଗନ୍ଧ ଛାଡୁଥାଏ ଖାଲି ।
ଦୂରରୁ ଭାସି ଆସେ
ଶାଗୁଣାର ସ୍ୱର, କର୍କଶ ଅଥଚ ଗଭୀର ।
କିମ୍ବା ପ୍ରେମ, ଗଛ ତଳେ ପଡ଼ିଥିବା
ଶୁଖିଲା ଝରା ପତ୍ର ପରି,
କେତେ ଲୋକ ମାଡ଼ି ମାଡ଼ି ଚାଲିଗଲେ ତାକୁ,
ଭ୍ରୂକ୍ଷେପ କଲେନି, କେହି ଜାଣିଲେନି
ଏଠି ପ୍ରେମ ପଡ଼ିଅଛି ।

ଜୀବନଟା ଅଇଁଠା କାଗଜ ଠୁଙ୍ଗା,
ପଡ଼ିରହେ ରାସ୍ତାର କଡରେ ଆବର୍ଜନା ପରି,
ତାକୁ କେହି ସାଉଁଟି ନେବେନି:
ବିରହର ଋତୁ ବଡ଼ ନିଷ୍ଠୁର, ବଡ଼ ଉଦାସୀନ ।

ଏମିତି କଟିଗଲା
କେତେ ବର୍ଷ, କେତେ ମାସ, ଦିନ,
ଶୁଖିଗଲା କାଶତଣ୍ଡୀ ଫୁଲ,
ଜହ୍ନ ଆସି ଫେରିଗଲା
ନଈ ପଠା ପାଖରୁ ମୁହଁ ବୁଲାଇ,
ତୁଠ ପାଖେ କେହି ବସି ନାହିଁ ।
ପବନର ହାତ ଧରି କେହି ଆସିବେନି
ଚମକାଇ ଦେବାକୁ ହଠାତ୍ ।
ମୋ ଛାତିରେ ଅତି ସ୍ପଷ୍ଟ ବିରହର ଦାଗ,
ଏଥର ମୁଁ ପାରି ହେବି
ସୂର୍ଯ୍ୟାସ୍ତର ସେତୁ, ନୀରବରେ ନିତାନ୍ତ ଏକାକୀ,
ଏ କଥା କେହି ଜାଣିବେନି ।

■■■

# ଶ୍ୱାସକଷ୍ଟ

ଆମେ ସବୁ କ୍ଷୟ
ହୋଇଗଲୁ କ୍ରମଶଃ
ମୁଁ, ପତିତପାବନ ଆଉ ତଥାଗତ,
ସମସ୍ତେ ।
ଅସ୍ତଗାମୀ ସୂର୍ଯ୍ୟର ଆଲୁଅରେ
ଆମେ ସବୁ ଅତ୍ୟନ୍ତ ଧୂସର ଦିଶୁଛୁ,
ଆମର କଥା ବେଳେ ବେଳେ
ପାରମ୍ପର୍ଯ୍ୟହୀନ ହୋଇ ପଡୁଛି ।
ତେବେ ନିଉଟନଙ୍କ ମାଧ୍ୟାକର୍ଷଣକୁ
ଉପେକ୍ଷା କରି ଆମେ କେହି
ଭୂଇଁରେ ଟଳି ପଡୁନୁ,
ସଳଖ୍ ଚାଲି ପାରୁଛୁ ଏ ପର୍ଯ୍ୟନ୍ତ ।
ଆମେ ସମସ୍ତେ ଅବକ୍ଷୟର ଶିକାର,
ସହରର ସବୁଠି ଶ୍ୱାସକଷ୍ଟ ଅଛି,
ସବୁ ସାହିରେ ନିଃଶ୍ୱାସ ନେବାକୁ କଷ୍ଟ ହୁଏ,
ଖୁବ ଶୀଘ୍ର ଶୁଖିଯାଏ ଟବ୍‌ର ନିରୀହ ଗୋଲାପ,
ଚାରିଆଡ଼େ ବିଷାକ୍ତ ଡିଜେଲର ଧୂଁଆ
ଆଚ୍ଛନ୍ନ କରି ରଖେ ଆମ ସମସ୍ତଙ୍କୁ,
ମଳିନ ସନ୍ଧ୍ୟା ଆହୁରି ମଳିନ ଦିଶେ ।

ପବନକୁ ଚିରି ଦେଇ
ଫାଳ ଫାଳ କରି
ଭାସି ଆସେ ମେଘର ଦାମ୍ଭିକ ଗର୍ଜନ,
ତା ଅଣ୍ଟିରେ ଖୋସା ଅଛି ବିଜୁଳୀର ଛୁରୀ,
ବର୍ଷା ହେବ, ବର୍ଷା ହେବ ଆଜି ।
ଭାସି ଯିବ ସହରର ଗଳି- ଉପଗଳି,
ସବୁ ନାଳ, ଛକର ଉଚ୍ଚା ଉଚ୍ଚା ପିଣ୍ଡା,
ବୁଡ଼ି ଯିବ ତୁଳସୀ ଚଉରା ।
ଆମେ ସବୁ ନିସ୍ତୁକ ଓଦା ହେବା
ଏ ବର୍ଷା ପାଣିରେ ।
ଭାସିଯିବ ଆମର ବୟସ,
ମୁଁ, ପତିତପାବନ ଓ ତଥାଗତ,
ନିଃଶ୍ୱାସ ନେବା ଆମେ ସ୍ୱଚ୍ଛନ୍ଦ ଭାବରେ
ଆଉ ନାହିଁ, ଶ୍ୱାସକଷ୍ଟ ନାହିଁ ।



# ସୁଡୌଲ ଅନ୍ଧାର

ଅନ୍ଧାରରେ, ଶୋଇଛି ଅନ୍ଧାର,
ମୁଁ ଜାଣିଛି ଅନ୍ଧାରର ଅବୟବ ଅଛି,
ହାତ-ଗୋଡ, ଆଖି-ନାକ-କାନ,
ସୁଡୌଲ ସ୍ତନ ।
ଅନ୍ଧାରର ସବୁ କିଛି ଅଛି,
ସେ କିଛି ପ୍ରାଗୈତିହାସିକ
ସରୀସୃପ ନୁହେଁ ।

ଅନ୍ଧାରର କୃଷ୍ଣ କେଶଭାର ଅଜାଡ଼ି ପଡ଼ିଛି
ଘରର ଅନ୍ଧାରକୁ ଆହୁରି ଅନ୍ଧାର କରି ଦେଇ ।
ନିଷ୍ପାପ, ପବିତ୍ର, କୁମାରୀ ଅନ୍ଧାର
ଶୋଇ ଅଛି ଅନ୍ଧାର ଭିତରେ ।
ଅନେକ ରହସ୍ୟ ଅଛି
ଏ ଅନ୍ଧାରରେ,
ନିରଙ୍କୁଶ ଅନ୍ଧାରରେ ପ୍ରଚୁର
ଶିହରଣ ଅଛି,
ଏ ଅନ୍ଧାର ମୃତ୍ୟୁହୀନ ଶତାବ୍ଦୀ-ପ୍ରାଚୀନ ।

ସେତେବେଳେ ମଧ୍ୟ ରାତ୍ରି,
ସହରର ରାସ୍ତା ସବୁ ଶୂନ୍‌ଶାନ୍
ଲମ୍ବିଛି ଅଜଗର ପରି,
ଘରମାନେ ଢୁଳାଉଛନ୍ତି
କାନ୍ଧରେ ମୁଣ୍ଡ ରଖି ପରସ୍ପରର
ଜହ୍ନର ଚିହ୍ନ-ବର୍ଣ୍ଣ ନାହିଁ ଆକାଶରେ ।
ଭାସିଆସେ ପେଚକର ଡେଣାର ସ୍ପନ୍ଦନ,
ସେଥିରେ ପ୍ରତ୍ୟାଶିତ ଶିହରଣ ଅଛି ।

ମୁଁ ଘରକୁ ଫେରୁଛି ଏକାକୀ,
ଅନ୍ଧାରକୁ ରଖି ସାକ୍ଷୀ
ଅଣ୍ଡାଳି, ଅଣ୍ଡାଳି ।
ମୁଁ କଣ ଜାଣିଥିଲି
ମୋ ହାତ ଧରିବ ଆସି
ପରିଚିତ ସେହି ଅନ୍ଧକାର ?
ଟାଣି ନେବ ମୋତେ ତାର
କୁମାରୀ ଛାତିର ଅନ୍ଧାର ଭିତରକୁ ?

ସେ ନୁହେଁ ମିଶରର 'ମମି',
କିମ୍ୱା ଶବ ଦେହ ନୁହେଁ ଅନ୍ୟ କାହାରି,
ସେ ଅଟେ ଅତ୍ୟନ୍ତ ଜୀବନ୍ତ ।
ତାହାର ଅଛି ସବୁ କିଛି,
ହାତ-ଗୋଡ଼, ଆଖି-ନାକ-କାନ,
ସୁଡୌଲ ସ୍ତନ,
ଅନ୍ଧକାର ଶୋଇଛି ଅନ୍ଧାର ଭିତରେ ।

■■■

# ସାରା ରାତି

କାଲି ରାତି ସାରା ଛାତିରେ ମୋ
ସହସ୍ର ଉଲ୍‌କାର ପତନ,
ଅଗ୍ନି-ପଞ୍ଜରା ସବୁ ଛାରଖାର,
ଭାଙ୍ଗିରୁଜି ଗଲା ।
କାଲି ସାରା ରାତି
ଛାତିରେ ନିଁଆ ଲାଗିଥିଲା ।
ହୁ-ହୁ ଜଳିଲା ଛାତି,
ଯନ୍ତ୍ରଣାର ଦାବାନଳ ବ୍ୟାପିଗଲା
ଶିରାରେ ଶିରାରେ ।

ମାୟାବିନୀ ନାରୀର ଘ୍ରାଣ
ବିଛଣାରେ ଲାଗିରହିଥିଲା,
ଅନ୍ଧାରରେ ଛୁଇଁଥିଲି
ଓଠ, ନାଭି, ପରିଚିତ ସ୍ତନ ।
ପ୍ରବାହିନୀ ନଈ ପରି ଶୋଇଥିଲା ସିଏ,
ତା ଦେହରେ ଢେଉର
ଆକୁଳ ସ୍ପନ୍ଦନ ।
ଅତଡା ଖସିବା ଶବ୍ଦ
ରାତିକୁ ଚକିତ କରୁଥିଲା ଖାଲି ।

ମୋ ମନର ଅବାଧ
ନଗ୍ନ ଇଚ୍ଛାମାନେ
ଚାରିଆଡ଼େ ନାଚି ବୁଲୁଥିଲେ ।
ସେମାନଙ୍କ ନ ଥିଲା ସଂଯମ,
କିମ୍ବା କୌଣସି ଚକ୍ଷୁଲଜ୍ଜା,
ନଥିଲା ତିଳେ ମାତ୍ର ମାନ-ଅପମାନ
ମୁଁ ଶିକାର ହେଲି ସେମାନଙ୍କ,
ମୋ ଛାତିରେ ଅସଂଖ୍ୟ ବାସନା,
ଫଣା ଟେକି ଗର୍ଜିଲେ ସହସା,
ହଁ, କାଲି ସାରା ରାତି
ନିଦ୍ରାହୀନ କଟିଥିଲା ମୋର ।

■■■

# ଦଗ୍ଧ ବନସ୍ପତି

ବଣ ଛାଡ଼ି ଚାଲିଯାଏ
ଦଗ୍ଧ ବନସ୍ପତି,
ମୁଣ୍ଡ ପୋତି ଦେଇ,
ସେ ଆଜି ବଜ୍ରାହତ, ସ୍ତବ୍ଧ,
ଅଗ୍ନିଦଗ୍ଧ ସମସ୍ତ ବଲ୍କଳ ।
ଅରଣ୍ୟରେ ତାର ଛାଇ
ଆଉ ପଡ଼ିବନି ।
ଗହଳ ପତ୍ରରେ ତାର
ସୂର୍ଯ୍ୟର ମୁହଁ ଦିଶେ ନାହିଁ,
ତା' ବାଟ ଓଗାଳିବା ପାଇଁ
କେହି କଣ ନାହିଁ ?

ଲତା ମାନେ ଝୁରି ହେବେ
ଆଉଜିବା ପାଇଁ,
ବନସ୍ପତି ଚାଲିଯାଏ
ବଣ ଛାଡ଼ି ଦେଇ ।

ମୁଥାଘାସ, ଉଇହୁଙ୍କା, ଅଜସ୍ର ବିଟପି,
ଖୋଜି ହେବେ ନିଶ୍ଚେ ତାକୁ
ଏଣେ ତେଣେ, କୁଆଡ଼େ ଗଲା ବୋଲି ସିଏ ।
ଅରଣ୍ୟରୁ ଚାଲିଗଲା ବିରାଟ
ମହୀରୂହ ଏକ,
ବନସ୍ତରେ ପଡ଼ି ରହେ ପକ୍ଷୀଙ୍କ କାକଳୀ,
କିଛି ଆହତ ନୀଡ଼, କିଛି କୁଟା-କାଠି,
ଶୁଖିଲା ପତର ଆଉ ଜହ୍ନର
ନିବିଡ ଶରୀର ।
ତା ଡାଳରେ ଆଉ ଝୁଲିବେନି
ବ୍ୟର୍ଥ ପ୍ରେମ, ଦୀର୍ଘଶ୍ୱାସ,
କିମ୍ବା ଧର୍ଷିତା କିଶୋରୀ,
ପଣତରେ ବେକ ଭିଡ଼ି ହୋଇ ।

■■■

# ପାର୍କର ବେଞ୍ଚରେ ଆମେ ସବୁ

ଆମେ ସବୁ ବସିଥିଲୁ
ଧାଡ଼ି ହୋଇ ପାର୍କର ବେଞ୍ଚରେ,
ମୁଁ, ଖଗପତି, ପାଳଭୂତ, ଏବଂ ଭୂଷଣ୍ଡକାକ ।
ଆମର ଅତୀତ ଥିଲା
ହେମନ୍ତର ଗର୍ଭିଣୀ ଫସଲ, ପ୍ରାଚୁର୍ଯ୍ୟରେ ଭରପୁର,
ଆମର ଭବିଷ୍ୟତ ସମର୍ପିତ ଶଯ୍ୟାକୁ, ଆଉ
ବର୍ତ୍ତମାନ ବୋଲି କିଛି ନାହିଁ,
ପ୍ରଶ୍ନ ପଚାରିଲେ ମୁଁହରେ ଫୁଟି
ଉଠେ ବୈଦାନ୍ତିକ ହସ ।
ଆମେ କିନ୍ତୁ ଗପରେ ମଶଗୁଲ,
ଭ୍ରୂକ୍ଷେପ ନାହିଁ କେଉଁଆଡ଼େ ।

ଆମେ ଦେଖୁ କେମିତି ଗୁଣ୍ଡୁଚି ମୂଷା
ଗଛରୁ ଓହ୍ଲାଇ ଆସି
ଆମ ଆଗେ ଆସ୍ଫାଳନ କରେ,
କିମ୍ବା ଧାଡ଼ି ବାନ୍ଧି ଗୃହସ୍ଥ ପିମ୍ପୁଡ଼ି
ସଞ୍ଚିରଖେ ଶସ୍ୟକଣା ଭବିଷ୍ୟତ ପାଇଁ ।

ଲୋଡ଼ା ନାହିଁ ଅନୁକମ୍ପା, ଦୟା ବା କରୁଣା,
ଆମେ ଜାଣୁ ଯିବାକୁହିଁ ହେବ ଦିନେ,
ଚନ୍ଦନ ଚିତାର ନିଁଆ ଲାଗିଅଛି
ଗୋଧୂଳି ଦେହରେ,
ଆମେ ସବୁ ମୁଁହ ଦେଖୁ
ଫଟା ଦର୍ପଣରେ ।

ସମୟର କ୍ଲେଦାକ୍ତ କ୍ଷତ
ଫୁଟି ଉଠେ ନିଷ୍ଠୁର ଭାବରେ
ସ୍ପଷ୍ଟ ହୋଇ ।

ସ୍ମୃତି ସବୁ ବେଦନା-ବିଧୂର,
ବିଗତ ଯୌବନ କଥା କେହି ଭାବେ ନାହିଁ ।
ଏକାକୀତ୍ୱ କିଛି ବାଧେ ନାହିଁ,
କିନ୍ତୁ ବାଧେ ଉପହାସ, ଘୃଣା, ଅନୁଗ୍ରହ,
ମର୍ମାନ୍ତିକ ଭାବରେ ମନକୁ ।
ନିଦ ହୁଏ ପଳାତକ,
ସାରା ରାତି ଶୋଇ ହୁଏ ନାହିଁ ।

ବନ୍ଧୁତ୍ୱ ଭାଗ କରିବାକୁ
କେହି କଣ ନାହିଁ ?
ଗଛ ବା ପାହାଡ଼ ଅଛି,
ଅଛି ପୁଣି ଆକାଶର ମେଘ ।
କେତେ କଥା କହିଯାଏ
ଉଡ୍ଡୀନ ବଳାକାର ଧାଡ଼ି
ସଞ୍ଚାଳିତ ଡେଣାରେ ଡେଣାରେ ।
ଗୋଧୂଳିରେ ବାଜି ଉଠେ
ବିଦାୟ ରାଗିଣୀ,
ଏଥର ଯିବାକୁହିଁ ହେବ
ବେଳ ହେଲା ଛାଇ-ଲେଉଟାଣି ।
ମୁଁ କିଛି ଅଲୋଡ଼ା ନୁହେଁ
ଯିବି ଚାଲି ନିଶ୍ଚେ ଆଜିକାଲି,
ଯୌବନ ମାଗିବି ନାହିଁ
ମୁଁ କିନ୍ତୁ ନୁହଇ ଯଯାତି ।
ନଈପଠା, କାଶତଣ୍ଡୀ ଫୁଲ,
ନିଶ୍ଚେ ମୋତେ ଝୁରି ହେବେ
ଝୁରି ହେବ ଝରିଲା ବଉଳ,

ପଡ଼ି ରହେ ଗଛ ତଳେ
କୋଇଲୀର ଶବ,
ଢହୁ ଆସି ଫେରି ଯାଏ
ନିତି,
ବେକରେ ଗାମୁଛା ବାନ୍ଧି
ମୋତେ ପୁଣି ନେଇ ଯିବ .
କିଏ ଘୋସାରି ଘୋସାରି ?
ସ୍ୱେଚ୍ଛାରେ ମୁଁ ଚାଲିଯିବି
ବେଳ ଥାଉ ଥାଉ ।

■■■

# ଲିଭନ୍ତା ମଣିଷ

ସମସ୍ତେ ଲିଭିଯାନ୍ତି
ଦପ୍ କରି ଥରେ ଜ୍ୱଳି ଉଠି,
ହଠାତ୍ ଲିଭନ୍ତି କେହି କେହି,
ପୁଣି କେହି ଲିଭିବାକୁ ଆରମ୍ଭ
କରନ୍ତି, ଏପରିକି ଜ୍ୱଳିବା ପୂର୍ବରୁ,
କ୍ରମେ କ୍ରମେ ଚୂଡ଼ାନ୍ତ ଭାବରେ ।

ଲିଭିବାର ଅସଂଖ୍ୟ ପଦ୍ଧତି,
ଯେଉଁମାନେ ବୁଡ଼ି ରହନ୍ତି ବିଷାଦରେ
ବର୍ଷ ବର୍ଷ ଧରି,
ଯେଉଁମାନେ ଗାଧୁଆଘରେ
ଥରେ ପଶିଲେ ଆଉ ବାହାରନ୍ତି ନାହିଁ,
କିମ୍ବା ଟୁଲ ପକାଇ ଶାଢ଼ି ବାନ୍ଧନ୍ତି
ଝୁଲୁଥିବା ପଙ୍ଖାରେ କେବଳ,
ସେମାନେ ଲିଭନ୍ତି ଏମିତି ।

ମୃତ୍ୟୁ କିଛି ନିଜେ ଆସେ ନାହିଁ,
ଏହି ସବୁ ଲିଭିଲା ମଣିଷ
ମୃତ୍ୟୁକୁ ଡାକନ୍ତି ପାଖକୁ
ଆପଣାର ଭାବି ।
ସଂସାରର ସବୁ କାନ୍ଥ ପଡୁଛି ଭୁଶୁଡ଼ି,
ଦମ୍ଭ ହୋଇ ଠିଆ ନାହିଁ
କୌଣସି ପାଚିରୀ,
ମଣିଷ ବିମର୍ଷ ଦିଶେ
ଠିକ ଏକ ଭଗ୍ନସ୍ତୂପ ଭଳି ସେତେବେଳେ ।
ସୂର୍ଯ୍ୟପରି ଜ୍ୱଳନ୍ତା ଦିଶେ
ମ୍ରିୟମାଣ ମୃତପ୍ରାୟ ଜହ୍ନ,
ସବୁ କିଛି ପୋଡ଼ିବାକୁ
ଆଗଭର ହୁଏ ।

ସେଦିନ ପାଇଗଲି ମୃତ ଏକ
ଯୁବତୀର ସଂକ୍ଷିପ୍ତ ଡାଏରୀ,
ସେଥିରେ ଲେଖାଥିଲା ପୃଥିବୀରୁ
ଅପସରି ଯିବାର ଅଶେଷ ପଦ୍ଧତି ।
ଅବଶ୍ୟ ତାର ସ୍ୱାମୀ ଛାଡ଼ପତ୍ର
ଦେବା ଲାଗି ରାଜି ହୋଇଥିଲା ।
କିନ୍ତୁ ତାର ତର ସହିଲାନି,
ସ୍ୱାମୀକୁ କେବଳ ନୁହେଁ,
ସମଗ୍ର ସଂସାରକୁ ସେ
ଛାଡ଼ି ଦେଇ ଗଲା ।
ସେ ପ୍ରେମ କରି ବାହା
ହୋଇଥିଲା ।
ପ୍ରେମ ଏକ ନିଷିଦ୍ଧ କାନନର ଫୁଲ,
ଯେ ପାଇଛି ତାହାର ଘ୍ରାଣ,
ତା ପାଖରେ ଅତି ତୁଚ୍ଛ ପ୍ରାଣ,
ମୃତ୍ୟୁର ନିବିଡ଼ ସ୍ପର୍ଶ
ପ୍ରେମ ଠାରୁ ଦାମୀ ।
ତା ତାଲିକାରେ ଥିଲା
ଶୀତଳ କୂଅର ପାଣି,
ନୀଳ କିରାସିନି, ପୋକମରା ଫଲିଡଲ,
ନିଦର ବଟିକା ଆଉ ବାଡ଼ି ପଛ ପଟର ପୋଖରୀ ।
ସେ ଜାଣିଛି ପ୍ରେମ ଠାରୁ ତୀବ୍ର ହଳାହଳ
ପୃଥିବୀରେ କିଛି ହେଲେ ନାହିଁ ।
ଆଉ ତାର ପୁଅ, ଠିଆ ଅଛି
ଅନାଥାଶ୍ରମର ଦୁଆର ମୁହଁରେ,
ଅସହାୟ, ଏକା ।

■■■

# ବିରହ ଡିନ୍ତୁଛି

ଗୋଲାପ ମୂଳରେ ରକ୍ତ ଢାଳି
ଫୁଟାଏ ମୁଁ ରକ୍ତାକ୍ତ ଗୋଲାପ,
ସେଥିଲାଗି ଗୋଲାପ ଦିଶେ
ଏତେ ଲାଲ !
କବିତା ମୂଳରେ ବି ଢାଳିବାକୁ
ହୁଏ ରକ୍ତ ଠିକ ସେହିଭଳି,
ହୃଦୟକୁ ଚିରି ଦେଇ
ଫାଳ ଫାଳ କରି
ରକ୍ତ ଢାଳେ କବି,
ଫୁଟି ଉଠେ କବିତାର କଢ
ଏକାନ୍ତ ମାୟାବୀ ।

ବହୁ ଦିନୁଁ କବିତା ଲେଖୁନି ।

ବର୍ଷାର ଉପକଥା ସରି ମଧ
ସରି ଯାଏ ନାହିଁ,
ମେଘର ଦୀର୍ଘଶ୍ୱାସ ଝରି ପଡ଼େ
ଅବିରଳ ବର୍ଷାର ଧାରାରେ,
ବିରହ ଭିଜୁଅଛି
ନିର୍ମମ ଭାବରେ ।

ମୁଣ୍ଡ ଉପରେ ଛତାର ଆଶ୍ରୟ
କିମ୍ବା ଗଛର ନିବିଡ଼ ଛାଇ ନାହିଁ
କେଉଁ ଆଡ଼େ,
ଏଥର ମୁଁ ଲେଖି ଦେବି
ତୁମ ନାଁ ମେଘର ଦେହରେ ।
ମୃତ୍ୟୁର ଏ ପାରିରେ ଅସଂଖ୍ୟ
ବାସନା କୋରି କୋରି ଖାଏ ହୃଦୟକୁ,
ମୃତ୍ୟୁର ସେ ପାରିରେ ପଡ଼ି ରହେ
ଭସ୍ମରାଶି କେବଳ ଉଡି ଯିବା ପାଇଁ,
ରାତି ଯାକ ତୃଷ୍ଣାର୍ତ୍ତ ମୁଁ
ନିଶ୍ଚେ ମୁଁ ଫେରି ଯିବି ନାହିଁ,
ମେଣ୍ଟାଇବି ଆକଣ୍ଠ ପିପାସା,
ମୋତେ କିଛି ଅଶ୍ରୁ-ଜଳ ଦିଅ
ଚାତକ ମୁଁ ସେହି ଜଳ ପାଇଁ ।
ବାଉଁଶ ବୁଦା ଉହାଡ଼ରୁ
ଜାଗି ଉଠେ ଜହ୍ନ
ଠିକ ଏକ ନାରୀ ପରି
କୁହୁଡ଼ିରେ ପହଁରି ପହଁରି,
କ୍ରମଶଃ ଆଗେଇ ଆସେ
ମୋ ପାଖକୁ,
ପ୍ରତୀକ୍ଷାର ଅବସାନ କରି ।

■■■

# ପ୍ରେମ-ଅପ୍ରେମ

ବୟଃସନ୍ଧିର ଈଷତ୍ ପୂର୍ବରୁ
ତୁମେ କାହାରି ବାଗ୍‌ଦତ୍ତା ଥିଲ
ମୁଁ ଜାଣିବି କିପରି ?
ତୁମେ କଣ ଅଭିନୟ କରୁଥିଲ
ଏତେ କାଳ ?
ମୁହୁର୍ମୁହୁ ଦୀର୍ଘଶ୍ୱାସ, ଅଶ୍ରୁର ପତନ,
ଏସବୁ ଥିଲା କଣ ଅନ୍ୟ ଜଣକ ପାଇଁ ?

ମୋର ଆଉ ତିଳେ ହେଲେ
ପତିଆରା ନାହିଁ କାହାରି ଉପରେ,
ତୁମେ ଗୋଡ଼ ଥୋଇ ଏରୁଣ୍ଡିବନ୍ଧରେ
କାହା ଲାଗି ପ୍ରତୀକ୍ଷାରେ ଅଛ ?
ମୁଁ ଜାଣିଛି ମୋ ପାଇଁ କି ନୁହେଁ,
ତୁମେ ଦିଗ୍‌ବଳୟ ଆଡ଼କୁ
ଅଳସ ଭଙ୍ଗୀରେ ଅନାଅ କାହିଁକି ?

ଭୁଶୁଡ଼ି ପଡୁଛି ବିଶ୍ୱାସର
ସମସ୍ତ ପାଚିରୀ, ଗୋଟି ଗୋଟି କରି,
ମୁଁ ଦିଶୁଛି ଏକ ଭଗ୍ନସ୍ତୂପ ପରି ।
ଶୋଇଛି ମୁଁ ମଶାରୀ ଭିତରେ,
ଅବାଧ ଇଚ୍ଛାଙ୍କ ଉପରେ ମୋର
ଆଉ ଅକ୍ତିଆର ନାହିଁ ।
ସମସ୍ତେ ବିଶ୍ୱାସଘାତକତା କରୁଛନ୍ତି
ମୋ ସଙ୍ଗେ ।
ପରିଚିତ ହାତ-ଗୋଡ଼,
ହୃଦୟର ପ୍ରତିଟି ପଞ୍ଜରା,
ଭାଙ୍ଗି ଚୂରମାର ଆଜି

ଏହି ମୁହୂର୍ତ୍ତରେ ।
ବିଛଣାର ପ୍ରତିଟି ଢେଉ,
ତକିଆର ଅଭ୍ୟସ୍ତ ଠାଣି,
ଖଟ କେଭେ କରି ନାହିଁ ବେଇମାନି,
ତଥାପି ମୁଁ ବଡ ଅସହାୟ ଆଜି,
ସେମାନଙ୍କୁ ବୁଝି ପାରୁ ନାହିଁ ।

ଆଜିବି ଘଟିଛି ସୂର୍ଯ୍ୟାସ୍ତ
ପାଣି ଟାଙ୍କି ପଛେ ପ୍ରତି ଦିନ ପରି ।
ମୁଁ ଜାଣିଛି ତୁମେ କେଭେ
ଆସିବନି ବାଲିବନ୍ତ ଡେଇଁ
ସମୁଦ୍ରର ଆସ୍ଫାଳନ ବୁଡାଇବ
ସିକ୍ତ ତୃଣଭୂମି,
ନିଶ୍ଚେ ଆସିବ ଝଡ
ଦୋହଲାଇ ଦିଗନ୍ତକୁ ପୁଣି ।
ଏ ଝଡ ଉଡାଇ ନେବ
ମଶାରୀକୁ ମୋର,
ମୌସୁମୀ ମେଘ ପରି
ଆକାଶକୁ ଡେଣା ମେଲି ଦେଇ
ଉଡ଼ି ଯିବ ସିଏ ।
ପଡ଼ିଥିବ ପରିଚିତ ଦେହ
ମୋର ଲମ୍ୱଳାଲ ହୋଇ ।
ତୁମର ସମଗ୍ର ପ୍ରସ୍ତାବ ଯାହା ଦିନେ
କବିତା ପରି ମନେ ହେଉଥିଲା
ତାହା ଅଳୀକ ସ୍ୱପ୍ନ ଆଜି ।
ହାତିରେ ଜ୍ୱଳି ଉଠେ ତୀବ୍ର ଦାବାନଳ,
ତାହା ଆଉ ଲିଭେ ନାହିଁ
ଝଡ଼ ବା ବର୍ଷାରେ କେବଳ ।



# ଜୀବନାନନ୍ଦ: ୧୦୦ ବର୍ଷ

ବିମର୍ଷ ଚଢେଇ ପରି
ପୃଥିବୀକୁ ଆସିଥିଲ ତୁମେ
କୁହୁଡ଼ିରେ ବାଟ ହୁଡ଼ି
ମ୍ଳାନ ଜୋଛନାରେ ।
ସେତେବେଳେ ହେମନ୍ତର ମାସ,
କାକରରେ ଓଦା ଥିଲା ଘାସ,
ପବନରେ ଗଛଙ୍କ ଦୀର୍ଘଶ୍ୱାସ
ଲାଖି ରହିଥିଲା ।

ଗୋଡ଼ିବାଣ ଫୁଲରେ ଫଗୁଣ
ଧରା ଦେଇଥିଲା,
ପ୍ରଜାପତି ଉଡି ଉଡି
ବସୁଥିଲା,
ଶୟସ, ବାଘନଖି, ଧୁତୁରା ଫୁଲରେ ।
ତୁମେ ଆସି ଦେଖୁଥିଲ
କେମିତି ଭୁତିଆରୀ ଝରି ପଡ଼େ
ମାଟିର କୋଳରେ ।
ତୁମେ ଆଉଁସି ଦେଲ ଆସି
ଈଶ୍ୱର ଜଟା ଫୁଲକୁ କେବଳ !

ଧାନକଟା ସରିଲାଣି
ପଡ଼ିରହେ ଏଠି ସେଠି
କୁଟାକାଠି, ସାପକାତି,
ମ୍ରିୟମାଣ ଘାସ ।
ଚୁପ୍ ଚାପ୍ ଠିଆ ରହେ ପାଳଭୂତ,
ତାର ଆଉ କାମ କିଛି ନାହିଁ ।

ଧୀରେ ଧୀରେ ଉଠି ଆସ ତୁମେ
ଦିଗନ୍ତ ପାଖରୁ,
ଖଣ୍ଡେ ଧୋତି ପିନ୍ଧିଅଛ
ଫୁଙ୍ଗୁଳା ଦେହରେ ।
ଧୋତିର ଅପର କାନି
ବେଢିଅଛି ଦେହକୁ ତୁମର ।
କାକରରେ ଓଦା ଥିଲା ଘାସ,
ତୁମେ ତାକୁ ମାଡ଼ି ମାଡ଼ି
ଆଗେଇ ଆସିଛ ଖାଲି ପାଦରେ କେବଳ ।
ଆକାଶରେ ମଲାଜହ୍ନ ଦେଖୁଥିଲା
ତୁମ ଗତିବିଧି,
ଗଛଙ୍କ ବିଷାଦ ପରିଧି
ମାପୁଥିଲା ଆଦିମ ପେଚା
ବସି ବସି ଗଛ କୋରଡ଼ରେ ।
ହଠାତ୍ ଦୌଡ଼ି ଗଲା ଧୂସର ନେଉଳ ଏକ
କିଆ ବୁଦା ପାଖ ଗୋହିରୀରେ ।

କାହିଁକି ଦେଖିଲ ନାହିଁ
ହଂସଙ୍କ ବାହୁଡ଼ା ବାଲିବନ୍ତ ଡେଇଁ ?
ସୁନେଲି ଡେଣାର ଚିଲ
ଆକାଶରେ କାନ୍ଦି କାନ୍ଦି
ତୁମକୁହିଁ ଝୁରି ହେଉଥିଲା ।

ତୁମେ କିନ୍ତୁ ଚାଲିଗଲ
ଟ୍ରାମ ଲାଇନ ଧରି ଧରି
ଅନେକ ଅନେକ ଦୂରକୁ
ଯେଉଁଠୁ କେହି
ଫେରନ୍ତିନି କେଭେ ।
ଟ୍ରାମ୍‌ର ସତର୍କ-ଘଣ୍ଟି
ତୁମେ ଶୁଣିଲନି ।
ତୁମ କାନେ ବାଜୁଥିଲା
ନିଃସଙ୍ଗ ଡାହୁକର ସ୍ୱନ ସେତେବେଳେ ।
■■■